# ଆମ ପୁରାଣ କଥା



କଟକ ଟ୍ରେଡିଂ କମ୍ପାନୀ
ବାଲୁବଜାର, କଟକ-୨

# ଆମ ପୁରାଣ କଥା

( ପ୍ରଥମ ଭାଗ )


ସଙ୍କଳକ :

ଶ୍ରୀ କହ୍ନାଇଁ ଚରଣ ସ୍ୱାଇଁ

ଶ୍ରୀ ପରମାନନ୍ଦ ଷଡ଼ଙ୍ଗୀ



ନୂତନ ସଂସ୍କରଣ—୧୯୮୯

ପ୍ରକାଶକ :

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ—୨

ମୂଲ୍ୟ—୫ ଟଙ୍କା ୫୦ ପଇସା

# ସୂଚୀପତ୍ର

**ବିଷୟ** | **ପୃଷ୍ଠା**


| | | |
|---|---|---|
| ୧ । | ସମୁଦ୍ର ମନ୍ଥନ | ୧ |
| ୨ । | ଗୁରୁଭକ୍ତି | ୫ |
| ୩ । | ଦାତା ହରିଶ୍ଚନ୍ଦ୍ର | ୧୦ |
| ୪ । | ତପସ୍ୟାର ଫଳ | ୧୫ |
| ୫ । | ଶକୁନ୍ତଳା | ୧୮ |
| ୬ । | ଦଧୀଚିଙ୍କ ତ୍ୟାଗ | ୨୫ |
| ୭ । | ଜଡ଼ ଭରତ | ୨୮ |
| ୮ । | ଗୋ-ସେବାର ଫଳ | ୩୬ |





ମୁଦ୍ରକ-
ମହାଲକ୍ଷ୍ମୀ ପ୍ରେସ
ସାହେବଜାଦା ବଜାର, କଟକ-୨

# ଆମ ପୁରାଣ କଥା

## ସମୁଦ୍ର ମନ୍ଥନ

ଥରେ ଦେବରାଜ ଇନ୍ଦ୍ର ହସ୍ତୀ ପୃଷ୍ଠରେ ବସି ଯାଉଥିଲେ । ବାଟରେ ଦୁର୍ବାସା ମୁନିଙ୍କ ସାଙ୍ଗେ ଭେଟ ହେଲା । ତହୁଁ ଇନ୍ଦ୍ର ତଳକୁ ଓହ୍ଲାଇ ମୁନିଙ୍କୁ ପ୍ରଣାମ କଲେ । ସେତେବେଳେ ଦୁର୍ବାସାଙ୍କ ହାତରେ ଗୋଟିଏ ସୁନ୍ଦର ଫୁଲହାର ଥାଏ । ସେ ଇନ୍ଦ୍ରଙ୍କୁ ହାରଟି ଉପହାର ଦେଇ ନିଜ ପଥରେ ଚାଲିଗଲେ ।

ଇନ୍ଦ୍ର ହାରଟି ହାତୀର ବେକରେ ଲମ୍ବାଇ ଦେଲେ । ପଶୁ ଫୁଲର ମୂଲ୍ୟ କାହୁଁ ବୁଝିବ । ସେ ସଙ୍ଗେ ସଙ୍ଗେ ହାରଟିକୁ ଶୁଣ୍ଢରେ ନେଇ ପାଦରେ ଦଳିଦେଲା । ଦୁର୍ବାସା ମୁନିଙ୍କୁ ତ ଭୂତ ଭବିଷ୍ୟତ ସବୁକଥା ଜଣା । ସେ ସେଠାରେ ନ ଥାଇ ମଧ୍ୟ ଏକଥା ଜାଣି ପାରିଲେ ଓ ରାଗିଯାଇ ଇନ୍ଦ୍ରଙ୍କୁ ଅଭିଶାପ ଦେଲେ, "ଆଜିଠାରୁ ତୁମେ ଲକ୍ଷ୍ମୀଛଡ଼ା ହୁଅ ।"

ମୁନିଙ୍କ ଅଭିଶାପ ଫଳରେ ଇନ୍ଦ୍ର ହତଶ୍ରୀ ହୋଇ ଦୁଃଖ ପରେ ଦୁଃଖ ଭୋଗ କରିବାକୁ ଲାଗିଲେ । ଏ ସୁଯୋଗ

ପାଇ ଅସୁରମାନେ ଦେବତାଙ୍କୁ ବହୁ କଷ୍ଟ ଦେଲେ । ସେମାନଙ୍କ ଅତ୍ୟାଚାର ସହି ନ ପାରି ଦେବତାମାନେ ଭଗବାନଙ୍କୁ ପ୍ରାର୍ଥନା କଲେ । ଭଗବାନ ଏମାନଙ୍କ ପ୍ରତି ପ୍ରସନ୍ନ ହୋଇ କହିଲେ "ତୁମ୍ଭେମାନେ ଆଉ ବ୍ୟସ୍ତ ହୁଅନାହିଁ ଅସୁରଙ୍କ ସଙ୍ଗେ ମିଶି ସମୁଦ୍ର ମନ୍ଥନ କର । ସମୁଦ୍ରରୁ ବହୁ ଧନରତ୍ନ ଓ ଅମୃତ ବାହାରିବ । ଅମୃତ ପାନ କଲେ ତୁମ୍ଭେ-ମାନେ ଅମର ହୋଇଯିବ । ଅସୁରମାନେ ତୁମକୁ ଆଉ ମାରି ପାରିବେ ନାହିଁ ।"

ଦେବତାମାନେ ଅସୁରଙ୍କୁ ସମୁଦ୍ର ମନ୍ଥନ କରିବାକୁ ବୁଝାଇଲେ । ଧନରତ୍ନ କଥା ଶୁଣି ଅସୁରମାନେ ଆଗଭର ହୋଇ ବାହାରି ପଡ଼ିଲେ । ଅସୁର ଓ ଦେବତାମାନେ ମନ୍ଦର ପର୍ବତକୁ ଆଣି ତହିଁରେ ବାସୁକୀକୁ ଗୁଡାଇ ସମୁଦ୍ର ମନ୍ଥନ ଆରମ୍ଭ କଲେ । ପର୍ବତ ଅତି ଭାରି ହେବାରୁ ତାହାକୁ କେହି ସମ୍ଭାଳି ପାରିଲେନାହିଁ । କ୍ରମେ ପର୍ବତ ସମୁଦ୍ର ମଧ୍ୟରେ ବୁଡ଼ିବାକୁ ଲାଗିଲା । ଏହା ଜାଣିପାରି ଭଗବାନ କଚ୍ଛପରୂପରେ ପର୍ବତକୁ ନିଜ ପୃଷ୍ଠରେ ଧାରଣ କଲେ । ତେଣୁ ମନ୍ଥନ କାର୍ଯ୍ୟ ସୁରୁଖୁରୁରେ ଚାଲିଲା ।

ବାସୁକି ନାଗ ମନ୍ଦର ପର୍ବତରେ ଗୁଡ଼ା ହୋଇଥାଏ । ଅସୁରମାନେ ତାହାର ଫଣା ପାଖ ଓ ଦେବତାମାନେ ଲାଞ୍ଜ ପାଖ ଧରି ଥାଆନ୍ତି । ବାରମ୍ବାର ମନ୍ଥନ ଫଳରେ ବାସୁକିର ସମସ୍ତ ଶରୀର ଥରି ଉଠିଲା । ତାହାର ସହସ୍ର ମୁଖରୁ ଉତ୍କଟ ବିଷ ବାହାରି କ୍ଷୀର ସମୁଦ୍ରରେ ବ୍ୟାପିଗଲା । ଦେବତା ଓ

ଅସୁରଙ୍କ ମଧ୍ୟରେ ବଡ଼ ଗୋଳେଣି ପଡ଼ିଲା । ଅମୃତ ବା ଧନରତ୍ନ କଥା ପଚାରେ କିଏ ? ବିଷର ଜ୍ୱାଳାରେ ସମସ୍ତେ ମରିଲେ; କ'ଣ କରାଯିବ ? ଶେଷରେ ସେମାନଙ୍କୁ ଗୋଟାଏ ବୁଦ୍ଧି ଦିଶିଲା । ସମସ୍ତେ ସ୍ଥିର କଲେ ମହାଦେବ କେବଳ ଏହି ବିଷ ପାନ କରିବାକୁ ସମର୍ଥ ।



ମହାଦେବ କୈଳାସ ପର୍ବତରେ ଥାଆନ୍ତି । ଦେବତାମାନେ ସେଠାକୁ ଯାଇ ତାଙ୍କୁ ସମସ୍ତ କଥା ଜଣାଇଲେ । ମହାକାଳରୂପୀ ଶିବ ସଙ୍ଗେ ସଙ୍ଗେ ଆସି ସମୁଦ୍ରରୁ ବିଷ ପାନକଲେ । ଏଣୁ ତାଙ୍କ କଣ୍ଠ ନୀଳକଣ୍ଠି ହୋଇଗଲା । କିନ୍ତୁ ତାଙ୍କ ଶରୀରର କୌଣସି କ୍ଷତି ହେଲା ନାହିଁ । ସେହିଦିନଠାରୁ ମହାଦେବଙ୍କର ନାମ ହେଲା 'ନୀଳକଣ୍ଠ' ।

ଦେବତା ଓ ଅସୁରମାନେ ପୁଣି ସମୁଦ୍ର ମନ୍ଥନ କଲେ । ପ୍ରଥମେ ଉଚ୍ଚୈଃଶ୍ରବା ନାମକ ଅଶ୍ୱ ସମୁଦ୍ରରୁ ବାହାରିଲା । ଇନ୍ଦ୍ର ଏହାକୁ ନିଜେ ନେଲେ । ତାପରେ ଐରାବତ ହସ୍ତୀ ବାହାରିଲା । ଇନ୍ଦ୍ର ନିଜର ବ୍ୟବହାର ପାଇଁ ଏହି ହାତୀକୁ ରଖିଲେ । ତା'ପରେ ସମୁଦ୍ରରୁ କୌସ୍ତୁଭ ମଣି ଓ ପାରିଜାତ ପୁଷ୍ପ ମିଳିଲା । ଦେବତାମାନେ ଏଗୁଡ଼ିକ ନେଇଗଲେ । ଶେଷରେ ଲକ୍ଷ୍ମୀ ଜାତ ହେବାରୁ ଦେବତାମାନେ ତାଙ୍କୁ ବିଷ୍ଣୁଙ୍କୁ ଦାନ କଲେ । ଏଥିରେ ଅସୁରମାନେ ଉତ୍ତ୍ୟକ୍ତ ହୋଇ ଉଠିଲେ ।

କାଳେ ଆଉ କ'ଣ ମିଳିବ, ଏହି ଲୋଭରେ ସମସ୍ତେ ପୁଣି ସମୁଦ୍ର ମନ୍ଥନ କଲେ । କିଛି କ୍ଷଣପରେ ଧନ୍ୱନ୍ତରି ଅମୃତ ଭାଣ୍ଡ ଧରି ସମୁଦ୍ରରୁ ବାହାରି ଆସିଲେ । ଅସୁରମାନେ ତାଙ୍କଠାରୁ ଅମୃତଭାଣ୍ଡ ଛଡ଼ାଇ ନେଇଗଲେ । ଦେବତାମାନେ ହତାଶ ହୋଇ ଭଗବାନଙ୍କୁ ପ୍ରାର୍ଥନା କଲେ । ଭଗବାନ ମୋହିନୀ ରୂପରେ ହଠାତ୍ ଉପସ୍ଥିତ ହେଲେ । କିଏ ଆଗେ ଅମୃତ ଖାଇବ ଏଥିପାଇଁ ସେତେବେଳେ ଅସୁରମାନଙ୍କ ମଧ୍ୟରେ କଳି ଲାଗିଥାଏ । ସେମାନେ ମୋହିନୀଙ୍କ ରୂପ ଦେଖି ଅତି ମୁଗ୍‌ଧ ହେଲେ ଏବଂ ତାଙ୍କ ହାତକୁ ଅମୃତ ଭାଣ୍ଡଟି ବଢ଼ାଇ ଦେଇ କହିଲେ, "ଆମ୍ଭମାନଙ୍କୁ ସମାନ ଭାବରେ ଅମୃତ ବାଣ୍ଟିଦିଅ ।" ମୋହିନୀ ଏଥିରେ ରାଜି ହୋଇ ସମସ୍ତଙ୍କୁ ଦୁଇ ଧାଡ଼ିରେ ବସିବାକୁ କହିଲେ । ଗୋଟିଏ ଧାଡ଼ିରେ ଦେବତା ଓ ଅନ୍ୟ ଧାଡ଼ିରେ ଅସୁରମାନେ

ବସିଗଲେ । ସମସ୍ତେ ମୋହିନୀଙ୍କ ଆଡ଼କୁ ଚାହିଁ ବସିଥାନ୍ତି । ତାଙ୍କ ରୂପ ଦେଖି ଅସୁରମାନେ ଭୋଳ । ମୋହିନୀ ଅଗ ଦେବତାମାନଙ୍କୁ ଦେଉଁ ଦେଉଁ ତାହା ସରିଗଲା ।

ରାହୁ ନାମକ ଏକ ଅସୁର ଦେବତାଙ୍କ ମଧ୍ୟରେ ଲୁଚି ଅମୃତ ଖାଇଦେଇଥିଲା । ତାହା ଚନ୍ଦ୍ର ଓ ସୂର୍ଯ୍ୟ ଜାଣିପାରି ବିଷ୍ଣୁଙ୍କୁ ଠାରି ଦେଲେ । ସେ ସୁଦର୍ଶନ ଚକ୍ରଦ୍ୱାରା ରାହୁକୁ ଦୁଇଖଣ୍ଡ କରିଦେଲେ । ଅମୃତ ଖାଇଥିବା ହେତୁ ଦୁଇଖଣ୍ଡ ଯାକ ଅମର ହୋଇ ରହିଲା । ମୁଣ୍ଡର ନାମ ରହିଲା 'ରାହୁ' ଓ ଗଣ୍ଡିର ନାମ ହେଲା 'କେତୁ' । ସେହିଦିନଠାରୁ ଚନ୍ଦ୍ର ଓ ସୂର୍ଯ୍ୟଙ୍କର ଉପରେ ରାହୁର ରାଗ ରହିଲା । ଏଣୁ ସେ କେତେବେଳେ ଚନ୍ଦ୍ରଙ୍କୁ ଓ କେତେବେଳେ ସୂର୍ଯ୍ୟଙ୍କୁ ଗ୍ରାସ କରେ । ଏହାକୁ 'ଚନ୍ଦ୍ରଗ୍ରହଣ' ଓ 'ସୂର୍ଯ୍ୟପରାଗ' କହନ୍ତି ।



## ଗୁରୁ ଭକ୍ତି

ବହୁ ବର୍ଷ ପୂର୍ବେ ଧୌମ୍ୟ ନାମରେ ଜଣେ ମହର୍ଷି ଥିଲେ । ସେ ଜ୍ଞାନ ଓ ତପସ୍ୟା ବଳରେ ଅସାଧାରଣ ଶକ୍ତି ଲାଭ କରିଥିଲେ । ତାଙ୍କ ଆଶ୍ରମରେ ବହୁ ସଂଖ୍ୟକ ଶିଷ୍ୟ ରହି ପାଠ ପଢୁଥିଲେ । ସେମାନଙ୍କ ମଧ୍ୟରେ ଉପମନ୍ୟୁ ବୋଲି ଜଣେ ଶାନ୍ତଶିଷ୍ଟ ବାଳକ ଥିଲା ।

ଉପମନ୍ୟୁ ଉପରେ ଗୁରୁଙ୍କର ଗାଈ ଚରାଇବା ଦାୟିତ୍ୱ ଥିଲା । ସେ ପ୍ରତିଦିନ ଅରଣ୍ୟରେ ବୁଲି ଗାଈମାନଙ୍କୁ ଚରାଏ । ସନ୍ଧ୍ୟା ହେଲେ ଆଶ୍ରମକୁ ଫେରି ପ୍ରାର୍ଥନାରେ ଯୋଗଦିଏ । କିନ୍ତୁ ସେ କେଉଁବେଳେ କଣ ଖାଏ, ତାହା କେହି ପଚାରନ୍ତି ନାହିଁ ।

ଦିନେ ଗୁରୁ ପଚାରିଲେ, "ଉପମନ୍ୟୁ ! ମୁଁ ତ ଆଶ୍ରମରେ ତୋର ଖାଇବା ପିଇବାର କୌଣସି ବ୍ୟବସ୍ଥା କରିନାହିଁ । ତେବେ ତୁ କଣ ଖାଇ ଜୀବନ ଧାରଣ କରୁଛୁ ?"

ଉପମନ୍ୟୁ ଉତ୍ତର କଲା, ଆଜ୍ଞା ! ମୁଁ କେତେଦିନ ଉପବାସରେ ରହିଲି । ଶେଷରେ କ୍ଷୁଧାଜ୍ୱାଳା ସହି ପାରିଲି ନାହିଁ । ତେଣୁ ଆଖପାଖ ଗ୍ରାମରୁ ଭିକ୍ଷା କରି ଯାହା ପାଉଛି ତାହା ଖାଉଛି ।"

ଏହା ଶୁଣି ମହର୍ଷି କହିଲେ, ତୋର ପ୍ରଥମେ ଗୁରୁଙ୍କୁ ଭିକ୍ଷାଦ୍ରବ୍ୟ ସମର୍ପଣ କରିବାର କଥା । ତାହା ନ କରି ନିଜେ କିପରି ଖାଉଛୁ ? ଏ ତ ଅନ୍ୟାୟ କଥା । ସାବଧାନ, ଏଣିକି ଆଉ ଏପରି ଭୁଲ କରିବୁ ନାହିଁ ।"

ପୁଣି କେତେଦିନ ଗଲା । ଗୁରୁ ଦେଖିଲେ ଉପମନ୍ୟୁ ପୂର୍ବପରି ସୁସ୍ଥ ସବଳ ଅଛି । ତହୁଁ ସେ ପଚାରିଲେ, "ଉପମନ୍ୟୁ ଆଜିକାଲି କଣ ଖାଉଛୁ ?"

ଉପମନ୍ୟୁ କହିଲା, "ଗୁରୁ ! ମୁଁ ଆଉ ଭିକ୍ଷାଦ୍ରବ୍ୟ ନିଜପାଇଁ ଗ୍ରହଣ କରୁନାହିଁ । ପ୍ରତିଦିନ ଯାହାପାଏ ଆପଣଙ୍କୁ ପ୍ରଦାନ କରେ । ଆପଣ ତହିଁରୁ କିଛି କିଛି ଅନ୍ୟ ଶିଷ୍ୟଙ୍କୁ ଦିଅନ୍ତି; କିନ୍ତୁ ମୋତେ କିଛି ଯାଚନ୍ତି ନାହିଁ । ଏଣୁ ଉପାୟ ନ ପାଇ ମୁଁ ଗାଈଙ୍କଠାରୁ ଦୁଧ ଦୁହିଁ ପିଉଅଛି ।"

ମହର୍ଷି କହିଲେ, "ଗାଈ ଯାହାର ଦୁଧ ତାହାର । ମୋତେ ନ ଜଣାଇ ତୁ କିପରି ଗାଈଙ୍କ ଦୁଧ ପିଉଛୁ ? ଏପରି କାର୍ଯ୍ୟ ଚୋରି କରିବା ଢଙ୍ଗେ ସମାନ । ମନେରଖ, ଏଣିକି ଆଉ ସେପରି କରିବୁ ନାହିଁ ।"

ଗୁରୁ ଉପମନ୍ୟୁକୁ ନାନା ଉପାୟରେ ପରୀକ୍ଷା କରୁଥାନ୍ତି । କିଛିଦିନ ପରେ ଗୁରୁ ପୁଣି ଉପମନ୍ୟୁକୁ ପଚାରିଲେ, "ଉପମନ୍ୟୁ । ମୁଁ ତ ତୋର ଭିକ୍ଷା ବନ୍ଦ କରିଛି । ଦୁଧ ପିଇବାକୁ ମଧ୍ୟ ମନା କରିଛି । ତେବେ ତୁ ତ ଉପବାସରେ ରହିଲା ପରି ଜଣା ପଡ଼ୁନାହୁଁ । ଏହାର କାରଣ କଅଣ ।"

ଉପମନ୍ୟୁ କରଯୋଡ଼ି ଜଣାଇଲା, "ଗୁରୁଦେବ ! ବାଛୁରୀମାନେ ନିଜ ନିଜ ମା ଠାରୁ ଦୁଧ ପିଇ ସାରିବା ପରେ ସେମାନଙ୍କ ମୁହଁରେ ଫେଣ ଲାଗିଥାଏ । ମୁଁ ତାହା ଖାଇ ମୋର କ୍ଷୁଧା ଦୂର କରୁଅଛି ।"

ଏଥିରେ ଗୁରୁ ଟିକିଏ ଅସନ୍ତୁଷ୍ଟ ହୋଇ କହିଲେ, "ଉପମନ୍ୟୁ ! ଏପରି କାର୍ଯ୍ୟ କରିବା ମଧ୍ୟ ତୋର ଅନୁଚିତ ।

ଏଥିରେ ବାଛୁରୀମାନଙ୍କୁ କଷ୍ଟ ହେଉଥିବ । ଆଉ ଏଣିକି ଏପରି କାର୍ଯ୍ୟ କରିବୁ ନାହିଁ ।"

ସେଦିନଠାରୁ ଉପମନ୍ୟୁ ଆଉ କୌଣସି ପଦାର୍ଥ ଖାଇଲା ନାହିଁ । ଦିନକୁ ଦିନ ତାହାର ଦେହ ଦୁର୍ବଳ ହୋଇଗଲା । ଥରେ ବନ ମଧ୍ୟରେ ଗୋରୁ ଚରାଇବା ବେଳେ ସେ ତଳେ ପଡ଼ିଗଲା । ଭୋକରେ ପେଟ ଜଳୁଥାଏ । ପ୍ରାଣ ବିକଳରେ ସେ ପାଖରେ ଥିବା ଅରଖ ଗଛରୁ ପତ୍ର ଛିଣ୍ଡାଇ ଖାଇଲା । ସଙ୍ଗେ ସଙ୍ଗେ ତାହାର ଆଖି ଦୁଇଟି ନଷ୍ଟ ହୋଇ ଗଲା ।

କ୍ରମେ ସନ୍ଧ୍ୟା ହେଲା । ଆଶ୍ରମ ଶିଷ୍ୟମାନେ ବନ୍ଦନା ଓ ଉପାସନା ଶେଷ କରି ନିଜ ନିଜ କାର୍ଯ୍ୟରେ ନିଯୁକ୍ତ ହେଲେ । ମହର୍ଷି ଧୌମ୍ୟ ଦେଖିଲେ ଉପମନ୍ୟୁ ନାହିଁ ।

ଧୌମ୍ୟ କେତେକଣ ଶିଷ୍ୟଙ୍କୁ ସଙ୍ଗରେ ନେଇ ଉପମନ୍ୟୁର ଅନ୍ୱେଷଣରେ ବାହାରିଲେ । ସେ ଅରଣ୍ୟ ମଧ୍ୟରେ 'ଉପମନ୍ୟୁ', 'ଉପମନ୍ୟୁ' ବୋଲି କେତେ ଡାକିଲେ । କିଛି ଦୂର ଗଲାପରେ ଏକ କୂଅ ମଧ୍ୟରୁ ପାଟି ଶୁଭିଲା, "ଗୁରୁଦେବ, ମୁଁ ଏହି କୂଅ ଭିତରେ ପଡ଼ିଯାଇଛି । ମୁଁ ବର୍ତ୍ତମାନ ଅନ୍ଧ । କେତୋଟି ଅରଖ ପତ୍ର ଖାଇବା ଫଳରେ ମୁଁ ଦୃଷ୍ଟିଶକ୍ତି ହରାଇଛି । ମୋତେ ଉଦ୍ଧାର କରନ୍ତୁ ।" ଗୁରୁ କହିଲେ ବତ୍ସ! ତୋର ଗୁରୁଭକ୍ତି ଦେଖି ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି । ବର୍ତ୍ତମାନ ତୁ ଦେବବୈଦ୍ୟ ଅଶ୍ୱିନୀକୁମାରଙ୍କୁ ସ୍ତବ କର । ତାଙ୍କ କୃପା ହେଲେ ତୁ ନିଶ୍ଚୟ ଚକ୍ଷୁ ଲାଭ କରିପାରିବୁ ।"

ଉପମନ୍ୟୁ କୂପମଧ୍ୟରୁ ବ୍ୟାକୁଳ ସ୍ୱରରେ ଅଶ୍ୱିନୀ-କୁମାରଙ୍କୁ ଡ଼ାକିବାକୁ ଲାଗିଲା । ତାହାର ସ୍ତୁତିରେ ସନ୍ତୁଷ୍ଟ ହୋଇ ଅଶ୍ୱିନୀକୁମାର କୂଅ ନିକଟରେ ଉପସ୍ଥିତ ହେଲେ ଓ ଖଣ୍ଡିଏ ପିଠା ବଢ଼ାଇ ଦେଇ କହିଲେ, "ଏ ପିଷ୍ଟକ ଖଣ୍ଡି ଭକ୍ଷଣ କର; ତାହାହେଲେ ତୋର ଚକ୍ଷୁ ଭଲ ହୋଇ-ଯିବ ।" ଏହା ଶୁଣି ଉପମନ୍ୟୁ କହିଲା, "ମହାଭାଗ ; ଗୁରୁ-ଦେବଙ୍କ ଆଦେଶ ନ ହେଲେ ମୁଁ ଏହା କଦାପି ଖାଇ ପାରିବି ନାହିଁ ।" ମହର୍ଷି ଧୌମ୍ୟ ଏ କଥା ଶୁଣି କହିଲେ "ଉପମନ୍ୟୁ ତୁମ୍ଭର ପରୀକ୍ଷା ଆଜି ଶେଷ ହୋଇଛି । ବର୍ତ୍ତମାନ ଦେବ-ବୈଦ୍ୟ ଦେଉଥିବା ପିଷ୍ଟକଖଣ୍ଡି ଭକ୍ଷଣ କର ।" ଉପମନ୍ୟୁ ପିଷ୍ଟକ ଖଣ୍ଡି ଖାଇବା ମାତ୍ରେ ପୂର୍ବପରି ନିଜର ଦୃଷ୍ଟିଶକ୍ତି ଫେରିପାଇଲା । ସେ କୂଅରୁ ବାହାରି ଗୁରୁଙ୍କର ପାଦବନ୍ଦନା କଲା । ଧୌମ୍ୟ ଅତ୍ୟନ୍ତ ପ୍ରୀତ ହୋଇ ତାକୁ ବର ପ୍ରଦାନ କରି କହିଲେ, "ଉପମନ୍ୟୁ ତୁମ୍ଭର ମଙ୍ଗଳ ହେଉ ଏବଂ ତୁମ୍ଭେ ସର୍ବଶାସ୍ତ୍ରରେ ଜ୍ଞାନଲାଭ କର ।"

ଆଜି ଧୌମ୍ୟ ନାହାନ୍ତି କି ଉପମନ୍ୟୁ ନାହିଁ, କିନ୍ତୁ ଅସାଧାରଣ ଗୁରୁଭକ୍ତି ଯୋଗୁ ଉପମନ୍ୟୁ ଚିର ସ୍ମରଣୀୟ ହୋଇ ରହିଛି ।

# ଦାତା ହରିଶ୍ଚନ୍ଦ୍ର

ପୂର୍ବେ ବିଶ୍ୱାମିତ୍ର ନାମରେ ଜଣେ ଋଷି ଥିଲେ । ସେ ନିଷ୍କାମ କାର୍ଯ୍ୟ କରି ସମ୍ପୂ କଷ୍ଟାଜ ଥିଲେ । ଏଥି ନିମନ୍ତେ ସେ ଆଶ୍ରମରେ ବହୁ ଫୁଲ ଓ ଫଳଗଛ ଲଗାଇ ଥିଲେ ।

ଦିନେ ବିଶ୍ୱାମିତ୍ର ଦେଖିଲେ କିଏ ତାଙ୍କ ଆଶ୍ରମରୁ ଫୁଲ ତୋଳି ନେଇଯାଉଛି । ଏଥିରେ ସେ ରାଗିଯାଇ ଅଭିଶାପ ଦେଲେ, "ଯେ ଏଣିକି ଏଠାରୁ ଫୁଲ ତୋଳିବ, ସେ ଲତାରେ ବନ୍ଦି ହୋଇ ରହିବ ।"

ଦିନେ ମୁନି ନିକଟସ୍ଥ ନଦୀକୁ ସ୍ନାନ କରିବାକୁ ଯାଇଥାନ୍ତି; କେତେଜଣ ସ୍ତ୍ରୀଲୋକ ଆଶ୍ରମକୁ ଫୁଲ ତୋଳିବାକୁ ଯାଇ ଲତାରେ ବନ୍ଦି ହୋଇ ରହିଗଲେ । ଯେତେ ଚେଷ୍ଟା କଲେ ମଧ୍ୟ ସେମାନେ ନିଜକୁ ମୁକ୍ତ କରି ପାରିଲେ ନାହିଁ । ତେଣୁ ସେମାନେ କ୍ରନ୍ଦନ କରିବାକୁ ଲାଗିଲେ ।

ଏହି ସମୟରେ ଅଯୋଧ୍ୟାର ରାଜା ହରିଶ୍ଚନ୍ଦ୍ର ଟାଣଧିକୁ ଯାଉଥିଲେ । ସେ ସ୍ତ୍ରୀଲୋକମାନଙ୍କର ଚିତ୍କାର ଶୁଣିପାରି ସେଠାରେ ଉପସ୍ଥିତ ହେଲେ ଏବଂ ଲତାଗୁଡ଼ିକ କାଟି ସେମାନଙ୍କୁ ମୁକୁଳାଇ ଦେଲେ ।

ବିଶ୍ୱାମିତ୍ର ସ୍ନାନରୁ ଫେରି ଦେଖିଲେ ଯେ ଆଶ୍ରମରୁ ଫୁଲସବୁ ଚୋରି ଯାଇଛି, ମାତ୍ର ଜଣେ ଲତାରେ ବନ୍ଦୀ ହୋଇ ନାହିଁ । ଏଥିରେ ସେ କ୍ରୋଧରେ ନିଆଁ ହୋଇଗଲେ ଏବଂ କିଛି ସମୟ ଧ୍ୟାନରେ ବସି ସବୁକଥା ଜାଣି ପାରିଲେ ।

ବିଶ୍ୱାମିତ୍ର ହରିଶ୍ଚନ୍ଦ୍ରଙ୍କର ସର୍ବନାଶ ଘଟାଇବାକୁ ସ୍ଥିର କଲେ । ସଙ୍ଗେ ସଙ୍ଗେ ସେ ତାଙ୍କ ରାଜ ସଭାରେ ପହଞ୍ଚିଲେ । ରାଜା ମୁନିଙ୍କୁ ଦେଖିଲାକ୍ଷଣି ଉପଯୁକ୍ତ ସମ୍ମାନ କଲେ । ତାଙ୍କର ରାଣୀ ଶୈବ୍ୟା ମୁନିଙ୍କର ପାଦଧୌତ କଲେ ଓ ପୁତ୍ର ରୋହିତାଶ୍ୱ ତାଙ୍କୁ ଉପଯୁକ୍ତ ଆସନରେ ବସାଇଲେ । ଏଥିରେ କି ଋଷିଙ୍କର କ୍ରୋଧ ଶାନ୍ତ ହୁଏ ? ସେ ହରିଶ୍ଚନ୍ଦ୍ରଙ୍କୁ କହିଲେ, "ରାଜା ! ତୁମେ ତ ଧର୍ମର ଅବତାର । ମୁଁ ଆଜି ଯାହା ମାଗିବି ତାହା ତୁମ୍ଭେ ମୋତେ ଦେଇ ପାରିବ କି ?" ହରିଶ୍ଚନ୍ଦ୍ର ଜଣାଇଲେ "ପ୍ରଭୋ ! ଯାହା ମାଗିବେ ତାହା ଆପଣଙ୍କୁ ଦେବାକୁ ମୁଁ ପ୍ରସ୍ତୁତ ଅଛି । ଏହା ମୋର ସତ୍ୟ ।" ତହୁଁ ମୁନି କହିଲେ, "ମୁଁ ବହୁକାଳ ବଣ ଜଙ୍ଗଲରେ ରହି ଜୀବନ କଟାଇଲିଣି । ବର୍ତ୍ତମାନ ରାଜଭୋଗ କରିବାକୁ ମୋର ବିଶେଷ ଇଚ୍ଛା ହେଉ ଅଛି । ତୁମ୍ଭର ସମସ୍ତ ରାଜ୍ୟ ଓ ଧନ ସମ୍ପତ୍ତି ମୋତେ ଦାନକର ।"

ହରିଶ୍ଚନ୍ଦ୍ର ନିଜର ସତ୍ୟ ରକ୍ଷା କରି ବିଶ୍ୱାମିତ୍ରଙ୍କୁ ତାଙ୍କର ସର୍ବସ୍ୱ ପ୍ରଦାନ କଲେ ଏବଂ ନିଜ ସ୍ତ୍ରୀ ଓ ପୁତ୍ରକୁ ସଙ୍ଗରେ ନେଇ ବନକୁ ବାହାରିଲେ ।

ଏହା ଦେଖି ବିଶ୍ୱାମିତ୍ର କହିଲେ, "ରାଜା ! ଦକ୍ଷିଣା ହୀନ ଦାନର କିଛି ମୂଲ୍ୟ ନାହିଁ । ବର୍ତ୍ତମାନ ମୋତେ

ଦକ୍ଷିଣା ସ୍ୱରୂପ ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କର । ଏହା ଶୁଣି ହରିଶ୍ଚନ୍ଦ୍ରଙ୍କର ବୁଦ୍ଧି ହଜିଗଲା । ସେ ନିଜର ସର୍ବସ୍ୱ ଦାନ କରିସାରିଛନ୍ତି । ତାଙ୍କର ଆଉ କ'ଣ ଅଛି ଯେ ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ଦେଇ ମୁନିଙ୍କ ସନ୍ତୁଷ୍ଟ କରିବେ । ରାଜା କିଛି ସମୟ ଚିନ୍ତା କରି କହିଲେ, "ମୁନିବର । ଦୟା କରି ମୋତେ ସାତଦିନ ସମୟ ଦିଅନ୍ତୁ । ମୁଁ ନିଶ୍ଚୟ ଆପଣଙ୍କୁ ଦକ୍ଷିଣା ଦେବି ।"

ଅନନ୍ତର ହରିଶ୍ଚନ୍ଦ୍ର କାଶୀ ଧାମକୁ ଗଲେ । ସେଠାରେ ସେ ନିଜର ସ୍ତ୍ରୀ ଓ ପୁତ୍ରଙ୍କୁ ଜଣେ ବ୍ରାହ୍ମଣ ଘରେ ଚାକରୀ ରଖାଇଲେ ଏବଂ ତାଙ୍କଠାରୁ କିଛି ଧନ ଆଣିଲେ । ଶେଷରେ ନିଜକୁ ଜଣେ ଚଣ୍ଡାଳ ପାଖରେ ବିକ୍ରୟ କରି ବିଶ୍ୱାମିତ୍ରଙ୍କୁ ଦକ୍ଷିଣା ଦେଲେ । ବିଶ୍ୱାମିତ୍ର ଦକ୍ଷିଣା ପାଇ ସନ୍ତୁଷ୍ଟ ହୋଇ ରହିଲେ ।

ରାଜା ହରିଶ୍ଚନ୍ଦ୍ର ଚଣ୍ଡାଳର ଆଦେଶରେ ଏକ ମଶାଣିର ଜଗୁଆଳି ହେଲେ ଓ ପ୍ରତି ମଡ଼ା ପାଇଁ ପଞ୍ଚପଣ କାହାଣ କଉଡ଼ି ମାସୁଲ ଆଦାୟ କଲେ । ଶୈବ୍ୟା ବ୍ରାହ୍ମଣ ଘରେ ଯୋଗାଣିଆ କାମ କଲେ । ରୋହିତାଶ୍ୱ ବ୍ରାହ୍ମଣର ଠାକୁର ପୂଜା ପାଇଁ ପ୍ରତିଦିନ ଫୁଲ ଯୋଗାଇଲା । ଏହି ରୂପେ କିଛି କାଳ କଟିଗଲା ।

ଦିନେ ରୋହିତାଶ୍ୱ ଗଛରୁ ଫୁଲ ତୋଳୁ ତୋଳୁ କାହୁଁ ଏକ ବିଷାକ୍ତ ସାପ ଆସି ତାକୁ ଦଂଶନ କଲା । କେତେଜଣ ବାଳକ ନିକଟରେ ଖେଳି ବୁଲୁଥିଲେ । ସେମାନେ

ରୋହିତାଶ୍ୱର ଏହି ଅବସ୍ଥା ଦେଖି ତାହାର ମା'ଙ୍କୁ ଜଣାଇଲେ । ଶୈବ୍ୟା ଧାଇଁଆସି ଦେଖିଲେ ଯେ ପୁଅର ପିଣ୍ଡରେ ଆଉ ପ୍ରାଣ ନାହିଁ । ତାହାର ଦେହ ବରଫଠାରୁ ଥଣ୍ଡା ହୋଇଯାଇଛି । ଏଥିରେ ତାଙ୍କର ଦୁଃଖର ସୀମା ରହିଲା ନାହିଁ । ସେ ପୁଅକୁ କୋଳରେ ଧରି ମୂଣ୍ଡ କଚାଡ଼ି କାନ୍ଦିବାକୁ ଲାଗିଲେ ।

କ୍ରମେ ସନ୍ଧ୍ୟା ହେଲା, ଚାରିଆଡ଼େ ଅନ୍ଧକାର ଘୋଟି-ଗଲା । ଶେଷରେ ଶୈବ୍ୟା ଅସହାୟ ଅବସ୍ଥାରେ ମଲା ପୁଅକୁ କାଖରେ ଧରି ମଶାଣିକୁ ଯୋଇଗଲେ । ନିଃଶବ୍ଦ ରାତି, ଚତୁର୍ଦ୍ଦିଗ ଶୂନଶାନ ।



ଶୈବ୍ୟା ଶ୍ମଶାନରେ ପହଞ୍ଚିଲାକ୍ଷଣି ହରିଶ୍ଚନ୍ଦ୍ର ତାଙ୍କୁ ମୁର୍ଦ୍ଦାର ପୋଡ଼ିବାର ମାସୁଲ ମାଗିଲେ । ସେ କେଉଁଠୁ ବା ଧନ ପାଇବେ ? ଏଣୁ ଅଧିକ ବିକଳ ହୋଇ ରୋଦନ କଲେ, "ହରିଶ୍ଚନ୍ଦ୍ର ! କାହିଁ ଅଛ ? ପୁତ୍ର ରୋହିତର ଏ ଅବସ୍ଥା ଆରେ ଦେଖି ପାରିଲ ନାହିଁ ! ମୁଁ ଅଭାଗିନୀ ପୁତ୍ରକୁ ହରାଇ କୁଆଡ଼େ

ଯିବ ?" ଏକଥା ଶୁଣିଲାକ୍ଷଣି ହରିଶ୍ଚନ୍ଦ୍ର ଚମକି ପଡ଼ିଲେ । ଶୈବ୍ୟାଙ୍କୁ ଚିହ୍ନିବାକୁ ତାଙ୍କୁ ଅଳ୍ପ ଅଧିକ ସମୟ ଲାଗିଲା ନାହିଁ । ସେ ତାଙ୍କୁ କୁଣ୍ଢାଇ ପକାଇଲେ । ଉଭୟେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । କିଛିକ୍ଷଣ ପରେ ରାଜା ଓ ରାଣୀଙ୍କର ଚେତନା ଆସିଲା । ସେମାନେ ସ୍ଥିର କଲେ ପୁଅର ଚିତାରେ ପଶି ଦୁହେଁ ପ୍ରାଣ ହରାଇବେ ।

ଏହି ସମୟରେ ବିଶ୍ୱାମିତ୍ର ହଠାତ୍ ସେଠାରେ ଉପସ୍ଥିତ ହୋଇ କହିଲେ, "ହରିଶ୍ଚନ୍ଦ୍ର ! ଆଜି ତୁମର ପରୀକ୍ଷା ଶେଷ ହୋଇଛି । ମୁଁ ତୁମର ପୁଅକୁ ବଞ୍ଚାଇ ଦେଉଛି । ଆଉ ତା ସଙ୍ଗେ ସଙ୍ଗେ ତୁମର ରାଜ୍ୟ ଓ ସମସ୍ତ ଧନ ସମ୍ପତ୍ତି ମଧ୍ୟ ଫେରାଇ ଦେଉଛି । ତୁମେ ପୂର୍ବପରି ଆନନ୍ଦରେ ରାଜ୍ୟଶାସନ କର । ତୁମ ଭଳି ଦାନୀ ଓ ସାଧୁ-ବ୍ୟକ୍ତି ତ୍ରିଭୁବନରେ ବିରଳ । ଧନ୍ୟ ତୁମର ତ୍ୟାଗ !" ଏହା କହି ବିଶ୍ୱାମିତ୍ର ରୋହିତାଶ୍ୱ ଉପରେ ମନ୍ତ୍ରଜଳ ସିଞ୍ଚିଦେଇ ନିଜ ଆଶ୍ରମକୁ ଫେରିଗଲେ ।

କିଛିକ୍ଷଣ ପରେ ରୋହିତାଶ୍ୱ ବଞ୍ଚି ଉଠିଲା । ତାକୁ ଦେଖି ରାଜା ଓ ରାଣୀ ନୂତନ ଜୀବନ ଲାଭ କଲେ ।

ଆଜି ହରିଶ୍ଚନ୍ଦ୍ର ନାହାନ୍ତି ସତ; କିନ୍ତୁ ସେ ଯେଉଁଠାରେ ମଶାଣି ଜଗୁଥିଲେ, ସେ ସ୍ଥାନ ବର୍ତ୍ତମାନ 'ହରିଶ୍ଚନ୍ଦ୍ର ଘାଟ' ନାମରେ ପରିଚିତ ।



# ଦକ୍ଷଯଜ୍ଞର ଫଳ

ରାଜା ସ୍ୱାୟମ୍ଭୁବ ମନୁ ନିଜର କନିଷ୍ଠା କନ୍ୟା ପ୍ରସୂତିଙ୍କୁ ଦକ୍ଷ ପ୍ରଜାପତିଙ୍କ ସହିତ ବିବାହ ଦେଇଥିଲେ । ପ୍ରସୂତିଙ୍କ ଗର୍ଭରୁ ବହୁ ସୁନ୍ଦର କନ୍ୟା ଜାତ ହୋଇଥିଲେ । କନ୍ୟାମାନଙ୍କ ମଧ୍ୟରେ ସତୀ ସମସ୍ତଙ୍କ ଅପେକ୍ଷା ଅଧିକ ଗୁଣବତୀ ଓ ରୂପବତୀ ଥିଲେ । ମହାଦେବ ଶିବଙ୍କ ସହିତ ତାଙ୍କର ବିବାହ ସମ୍ପନ୍ନ ହୋଇଥିଲା ।

ଥରେ ଏକ ସଭା ହୋଇଥିଲା । ସଭାରେ ବ୍ରହ୍ମା, ବିଷ୍ଣୁ ଓ ଶିବ ପ୍ରଭୃତି ଦେବତାମାନେ ଉପସ୍ଥିତ ଥିଲେ । ଦକ୍ଷପ୍ରଜାପତି ପହଞ୍ଚିବାରୁ ସମସ୍ତେ ଆସନ ତ୍ୟାଗକରି ଦକ୍ଷଙ୍କୁ ସମ୍ମାନ ପ୍ରଦର୍ଶନ କଲେ; କିନ୍ତୁ ଶିବ ଆସନରୁ ଉଠିଲେ ନାହିଁ । ତେଣୁ ଦକ୍ଷ ନିଜକୁ ଅପମାନିତ ମନେ କରି ଶିବଙ୍କୁ ଭର୍ତ୍ସନା କଲେ । କିଛିଦିନ ପରେ ଦକ୍ଷ ଏକ ଯଜ୍ଞର ଆୟୋଜନ କରି ତାଙ୍କର ବନ୍ଧୁବାନ୍ଧବ ଜ୍ଞାତି କୁଟୁମ୍ବ ସମସ୍ତଙ୍କୁ ନିମନ୍ତ୍ରଣ ଦେଲେ; କିନ୍ତୁ ଶିବଙ୍କୁ ନିମନ୍ତ୍ରଣ ଦେଲେ ନାହିଁ । ଶିବଙ୍କର ତ ଆଗରୁ ରାଗ ଥିଲା । ଏଥିଯୋଗୁଁ ତାଙ୍କର କ୍ରୋଧ ପୁଣି ବଢିଗଲା ।

ଯଜ୍ଞ ହେଉଥିବା କଥା ଶୁଣି ସତୀ ବାପ ଘରକୁ ଯିବା ପାଇଁ ଇଚ୍ଛା କଲେ । ଶିବ ତାଙ୍କୁ ବାରଣ କରି କହିଲେ,

"ଦେଖ, ମୋତେ ଦକ୍ଷରାଜା ନିମନ୍ତ୍ରଣ ନ କରି ଯଥେଷ୍ଟ ଅପମାନ ଦେଇଛନ୍ତି । ବିନା ନିମନ୍ତ୍ରଣରେ ତୁମ୍ଭର ସେଠାକୁ ଯିବା ଅନୁଚିତ; ଗଲେ ଯଥାବିଧି ଆଦର ବା ସମ୍ମାନ ପାଇବ ନାହିଁ ।" ବାପ ଘରେ ଝିଅ ଆଦର ପାଇବ ନାହିଁ–ଏକଥା ଆଦୌ ସତୀଙ୍କ ମନକୁ ଗଲାନାହିଁ । ସେ ବାପ ଘରକୁ ଯିବାକୁ ଜିଦ କଲେ । ଶେଷରେ ଶିବ ସମ୍ମତି ଦେଲେ ଓ ସତୀ ଦକ୍ଷ ରାଜାଙ୍କ ଗୃହକୁ ଗଲେ ।

ଯଜ୍ଞ ଉପଲକ୍ଷେ ଗୃହରେ ବଡ଼ ଉତ୍ସବ ଲାଗିଛି, ଝିଅ ଜ୍ୱାଇଁମାନେ ବସିଛନ୍ତି । ସତୀ ସଭାରେ ଉପସ୍ଥିତ ହୋଇ ଗୁରୁଜନମାନଙ୍କୁ ଯଥାବିଧି ସମ୍ମାନ କଲେ । ତା'ପରେ ପିତାଙ୍କ ନିକଟକୁ ଯାଇ ତାଙ୍କ ପାଦତଳେ ପ୍ରଣାମ କଲେ । କିନ୍ତୁ ପିତା ତାଙ୍କୁ ପଚେଦ ହେଲେ କିଛି ପଚାରିଲେ ନାହିଁ । ଏଥିରେ ତାଙ୍କ ମନରେ ବଡ଼ କଷ୍ଟ ହେଲା । ତାଙ୍କ ସ୍ୱାମୀ ମହାଦେବଙ୍କୁ ଯଜ୍ଞକୁ ନିମନ୍ତ୍ରଣ ନାହିଁ; ପୁଣି ପିତାଙ୍କର ତାଙ୍କ ପ୍ରତି ଏପରି ଅନାଦର । ସତୀ ଲଜ୍ଜାରେ ଆଉ ମୁହଁ ଦେଖାଇବେ କାହାକୁ ? ଏ କଥା ଶିବ ଶୁଣିଲେ କ'ଣ ଆଉ ଧୈର୍ଯ୍ୟ ଧରି ରହିବେ ? ତେଣୁ ସତୀ ଘୋର ଦୁଃଖ ଓ ଅପମାନରେ ସେହି କୁଣ୍ଡକୁ ଡେଇଁ ପଡ଼ି ଆତ୍ମହତ୍ୟା କଲେ ।

ଶିବଙ୍କର ରୁଦ୍ରଗଣ ସେଠାରେ ଥିଲେ । ସେମାନେ କଳି କନ୍ଦଳ ସୃଷ୍ଟି କଲେ । ଯଜ୍ଞ କାର୍ଯ୍ୟରେ ବିଘ୍ନ ଘଟିଲା । ମହାଦେବଙ୍କ ନିକଟକୁ ଖବର ଗଲା । ମହାଦେବ ପ୍ରଚଣ୍ଡ ମୂର୍ତ୍ତି ଧାରଣ କରି ଯଜ୍ଞ ସ୍ଥଳରେ ଉପସ୍ଥିତ ହୋଇ ଯଜ୍ଞ ନଷ୍ଟ

କଲେ ଓ ଦକ୍ଷରାଜାଙ୍କୁ ବିନାଶ କଲେ । ତାଙ୍କ କ୍ରୋଧ ଦେଖି ସମସ୍ତେ ଥରହର ହେଲେ । ବ୍ରହ୍ମା, ବିଷ୍ଣୁ ଓ ଇନ୍ଦ୍ର ପ୍ରଭୃତି ଦେବତାମାନେ ଶିବଙ୍କୁ ବହୁତ ଅନୁନୟ ବିନୟ କଲେ । ଶେଷରେ ଶିବ ଶାନ୍ତ ହେଲେ ।

ସତୀ ପୁଣି ହିମାଳୟ ପର୍ବତରେ ଜାତ ହେଲେ । ତାଙ୍କର ନାମ ହେଲା 'ପାର୍ବତୀ' । ପାର୍ବତୀ ଶିବଙ୍କୁ ପାଇବା ପାଇଁ କଠୋର ତପସ୍ୟା କଲେ । ଅନ୍ନ ଜଳ ମଧ୍ୟ ଛୁଇଁଲେ ନାହିଁ । ଶିବ ଏହା ଜାଣି ପାରିଲେ । ସେ ପାର୍ବତୀଙ୍କର ମନର ବଳ ପରୀକ୍ଷା କରିବା ନିମନ୍ତେ ବ୍ରହ୍ମଚାରୀ ବେଶରେ ତାଙ୍କ ନିକଟକୁ ଯାଇ କହିଲେ, "ପାର୍ବତୀ ! ତୁମେ କଦାପି ଶିବଙ୍କୁ ପତି ରୂପରେ ବରଣ କର ନାହିଁ । ସେ ତ ଜଙ୍ଗଲୀ ଲୋକ; ତାଙ୍କ କଣ୍ଠର ଭୂଷଣ ସାପ ଓ ଦେହର ଭୂଷଣ ପାଉଁଶ । ଘର ନଥିବାରୁ ସେ ଶ୍ମଶାନରେ ବାସ କରନ୍ତି । ତୁମେ ଏସବୁ ଜାଣୁ ଜାଣୁ ତାଙ୍କୁ ପାଇବାକୁ କାହିଁକି ଏତେ ଦୁଃଖ ଭୋଗ କରୁଛ ? ତପସ୍ୟାରୁ ବିରତ ହୁଅ ।"

ଏ କଥା ଶୁଣି ପାର୍ବତୀ ଆଉ ସମ୍ଭାଳି ହୋଇ ରହି ପାରିଲେ ନାହିଁ । ସେ ସଙ୍ଗେ ସଙ୍ଗେ ଉତ୍ତର କଲେ, "ମୁଁ ତୁମ ଅପେକ୍ଷା ଶିବଙ୍କୁ ଭଲକରି ଜାଣେ । ଦେବରାଜ ଇନ୍ଦ୍ର ଶିବଙ୍କର ପାଦ ବନ୍ଦନା କରନ୍ତି । ସ୍ୱୟଂ ବିଷ୍ଣୁ ମଧ୍ୟ ତାଙ୍କ ଗୁଣ ଗାଇମାଇ ଅନ୍ତ ପାଇ ନାହାନ୍ତି । ଆଉ ତୁମେ କି ଛାର ।" ବ୍ରହ୍ମଚାରୀ ପୁଣି କିଛି କହିବାକୁ ଯାଉଥିଲେ, ଏହି ସମୟରେ ପାର୍ବତୀ ତାଙ୍କୁ ବାଧା ଦେଇ କହିଲେ, 'ଶୁଣ, ଯେ ମହା-

ଧୂର୍ଜଟିଙ୍କର ନିନ୍ଦା କରେ ସେ କେବଳ ପାପ ଅର୍ଜନ କରେ ନାହିଁ, ଯେ ତାହା ଶୁଣେ ସେ ମଧ୍ୟ ପାପରେ ଭାଗୀ ହୁଏ । ଏଣୁ ମୁଁ ତୁମର କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ ।''

ପାର୍ବତୀ ସେଠାରୁ ଚାଲିଯିବାକୁ ଉଦ୍ୟତ ହେବାରୁ ଛଦ୍ମବେଶୀ ବ୍ରହ୍ମଚାରୀ ନିଜ ରୂପ ପ୍ରକାଶ କଲେ ଏବଂ କହିଲେ, "ପାର୍ବତୀ, ମୁଁ ତୁମ୍ଭ ନିଷ୍ଠାରେ ସନ୍ତୁଷ୍ଟ ହୋଇଛି, ଆଜି ତୁମ୍ଭର ତପସ୍ୟା ସଫଳ ହେଲା ।''



## ଶକୁନ୍ତଳା

ପୂର୍ବକାଳରେ କଣ୍ୱ ନାମରେ ଜଣେ ମହର୍ଷି ଥିଲେ । ଥରେ ସେ ବଣ ମଧ୍ୟରେ ବୁଲୁ ବୁଲୁ ହଠାତ୍ ଏକ ଶିଶୁର କ୍ରନ୍ଦନ ଶୁଣିଲେ । କିଛି ବାଟ ଯାଇ ସେ ଦେଖିଲେ ଯେ, ଶିଶୁଟିଏ ତଳେ ପଡ଼ିଛି ଓ ଗୋଟିଏ ଶକୁନ୍ତ ପକ୍ଷୀ ପକ୍ଷ ମେଲାଇ ତାହାକୁ ରକ୍ଷା କରୁଛି । ମୁନିଙ୍କ ହୃଦୟରେ ଦୟା ଆସିଲା । ସେ ଶିଶୁଟିକୁ ଆଶ୍ରମକୁ ନେଇ ପାଳନ କଲେ ଓ ତାହାର ନାମ ଦେଲେ 'ଶକୁନ୍ତଳା' ।

ଶକୁନ୍ତଳା କ୍ରମେ ବାଲ୍ୟକାଳ ଅତିକ୍ରମ କରି ଯୌବନ ପ୍ରାପ୍ତ ହେଲା । ସେ ନିଜର ରୂପରେ ଓ ଗୁଣରେ ଆଶ୍ରମବାସୀଙ୍କର ଆଦର ଲାଭ କଲା ।

ସେ ସମୟରେ ହସ୍ତିନାରେ ଦୁଷ୍ମନ୍ତ ନାମରେ ଜଣେ ଯୁବକ ରାଜତ୍ୱ କରୁଥିଲେ । ଦିନେ ସେ ମୃଗୟା ଉଦ୍ଦେଶ୍ୟରେ ଅରଣ୍ୟରେ ଭ୍ରମଣ କରୁ କରୁ କଣ୍ୱ ମୁନିଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ଏହି ସମୟରେ ଶକୁନ୍ତଳା ନିଜର ସଖୀ ଅନସୂୟା ଓ ପ୍ରିୟମ୍ବଦାଙ୍କ ସହିତ ଆଶ୍ରମର ତରୁଲତା ମୂଳରେ ଜଳସେଚନ କରୁଥିଲେ । ସେମାନେ ରାଜାଙ୍କୁ ଦେଖି ତାଙ୍କର ଉପଯୁକ୍ତ ସତ୍କାର କଲେ ।

ସେତେବେଳେ କଣ୍ୱମୁନି ଆଶ୍ରମରେ ନ ଥାନ୍ତି । ସେ ତୀର୍ଥ ଭ୍ରମଣରେ ଯାଇଥାନ୍ତି । ରାଜା ମୁନିକନ୍ୟାଙ୍କର ବ୍ୟବହାରରେ ସନ୍ତୁଷ୍ଟ ହୋଇ ସେଠାରେ କିଛିଦିନ ରହିଲେ । କ୍ରମେ ଦୁଷ୍ମନ୍ତ ଓ ଶକୁନ୍ତଳା ପରସ୍ପରର ରୂପ ଗୁଣରେ ଆକୃଷ୍ଟ



ହେଲେ । ରାଜା ଶକୁନ୍ତଳାଙ୍କୁ ବିବାହ କରିବାକୁ ଇଚ୍ଛାପ୍ରକାଶ କରିବାରୁ ସେ ଏଥିରେ ରାଜି ହେଲେ । ଗାନ୍ଧର୍ବ ବିଧିରେ

ତପସ୍ୱୀଙ୍କର ଶିବାକୁ କାର୍ଯ୍ୟଶେଷ ହେଲା । ଦୁଷ୍ମନ୍ତ କିଛିକାଳ ପରେ ନିଜ ରାଜ୍ୟକୁ ଫେରିଗଲେ । ଗଲାବେଳେ ସେ ଶକୁନ୍ତଳାଙ୍କୁ ନିଜର ରତ୍ନ ମୁଦିଟି ପିନ୍ଧାଇ ଦେଇ କହିଲେ, 'ପ୍ରିୟେ ! ଅଳ୍ପଦିନ ମଧ୍ୟରେ ଲୋକ ପଠାଇ ତୁମ୍ଭଙ୍କୁ ରାଜଧାନୀକୁ ନେଇଯିବି । ତୁମ୍ଭେ ସେଠାରେ ମୋର ପାଟରାଣୀ ହୋଇ ସୁଖରେ ରହିବ ।''

ରାଜା ଚାଲିଯିବାପରେ ଶକୁନ୍ତଳା ବଡ଼ ବ୍ୟାକୁଳ ହେଲେ । ସେ ସର୍ବଦା ଦୁଷ୍ମନ୍ତଙ୍କୁ ଚିନ୍ତାକରିବାକୁ ଲାଗିଲେ । ଏପରି ଅବସ୍ଥାରେ ଦିନେ ଦୁର୍ବାସା ମୁନି ଆଶ୍ରମରେ ଉପସ୍ଥିତ ହେଲେ । ସେତେବେଳେ ଶକୁନ୍ତଳା ଏକାକିନୀ ବସି ରାଜାଙ୍କ କଥା ଭାବୁଥାନ୍ତି । ଏଣୁ ସେ ମୁନିଙ୍କୁ ସମ୍ମାନ ଦେଖାଇ ପାରିଲେ ନାହିଁ । ଫଳରେ ଦୁର୍ବାସା ରାଗିଯାଇ ତାଙ୍କୁ ଅଭିଶାପ ଦେଲେ, "ତୁ ଯାହାକୁ ଚିନ୍ତାକରି ମୋତେ ଚିହ୍ନି ପାରିଲୁ ନାହିଁ ସେ ତୋତେ ଏହି ମୁହୂର୍ତ୍ତରୁ ଭୁଲିଯାଉ ।''

ଅନସୂୟା ଓ ପ୍ରିୟମ୍ବଦା ଅଳ୍ପ ଦୂରରେ ଥିଲେ । ସେମାନେ ଦୁର୍ବାସାଙ୍କର ଅଭିଶାପ ଶୁଣି ପାରିଲେ । ଦୁହେଁ ମୁନିଙ୍କ ପଛେ ପଛେ ଯାଇ ଅଭିଶାପ ଫେରାଇ ନେବା ନିମନ୍ତେ ଦୁର୍ବାସାଙ୍କୁ ବହୁତ ଅନୁରୋଧ କଲେ । ଶେଷରେ ମୁନିଙ୍କର ଦୟା ହେଲା । ସେ କହିଲେ, "ମୋର ଅଭିଶାପ ଅନ୍ୟଥା ହେବ ନାହିଁ । ତଥାପି ଶକୁନ୍ତଳା ଯେବେ କୌଣସି ସଙ୍କେତ ଦେଖାଇବେ, ତେବେ ଦୁଷ୍ମନ୍ତ ତାଙ୍କୁ ନିଶ୍ଚୟ ଚିହ୍ନି ପାରିବେ ।"

କଣ୍ୱମୁନି ତୀର୍ଥଭ୍ରମଣରୁ ଫେରିଆସିଲେ । ଶକୁନ୍ତଳା ଉପଯୁକ୍ତ ବ୍ୟକ୍ତିଙ୍କୁ ବିବାହ କରିଥିବା କଥା ଶୁଣି ସେ ଅତି ଆନନ୍ଦିତ ହେଲେ । ଦୁଷ୍ମନ୍ତଙ୍କଠାରୁ କୌଣସି ଖବର ନ ଆସିଲେ ମଧ୍ୟ ସେ ଶକୁନ୍ତଳାଙ୍କୁ ତାଙ୍କ ନିକଟକୁ ପଠାଇବାକୁ ସ୍ଥିର କଲେ । ମୁନିଙ୍କ ଆଦେଶରେ ଦୁଇଜଣ ଶିଷ୍ୟ ଓ ଆଶ୍ରମବାସିନୀ ବୃଦ୍ଧା ଗୌତମୀ ତାଙ୍କୁ ସଙ୍ଗରେ ନେଇ ହସ୍ତିନାର ରାଜଧାନୀକୁ ବାହାରିଲେ ।

ଶକୁନ୍ତଳା ପଥ ମଧ୍ୟରେ ଏକ ନଦୀରେ ସ୍ନାନ କଲେ । ରାଜା ଦୁଷ୍ମନ୍ତ ଦେଇଥିବା ମୁଦିଟି ତାଙ୍କ ଅଙ୍ଗୁଳିରୁ ଖସିଯାଇ କେତେବେଳେ ପାଣିରେ ପଡ଼ିଗଲା, ତାହା ସେ ଜାଣି ପାରିଲେ ନାହିଁ । ସମସ୍ତେ ଦୁଷ୍ମନ୍ତଙ୍କ ନଅରରେ ପହଞ୍ଚିଲେ ! ଶିଷ୍ୟ ଦୁହେଁ ପ୍ରଥମେ ରାଜାଙ୍କ ସହିତ ସାକ୍ଷାତ କରି ଜଣାଇଲେ, "ମହାରାଜ ! ଆମ୍ଭେ କଣ୍ୱମୁନିଙ୍କର ଶିଷ୍ୟ । ତାଙ୍କ ଆଦେଶରେ ଶକୁନ୍ତଳାଙ୍କୁ ଆପଣଙ୍କ ନିକଟକୁ ଆଣିଅଛୁ । ଆପଣ ତାଙ୍କୁ ଗ୍ରହଣ କରି ଆମ୍ଭମାନଙ୍କୁ ବିଦାୟ ଦିଅନ୍ତୁ ।" ରାଜା ଏକଥା ଶୁଣି ବିସ୍ମିତ ହେଲେ । ଶକୁନ୍ତଳାଙ୍କୁ ନିଜେ ବିବାହ କରିଥିବା ବିଷୟ ତାଙ୍କର ଆଦୌ ମନେ ପଡ଼ିଲା ନାହିଁ । ଏଣୁ ସେ ତାଙ୍କୁ ଗ୍ରହଣ କରିବାକୁ ଅସମ୍ମତ ହେଲେ । ଏକଥା ଜାଣି ଶକୁନ୍ତଳା ନିଜେ ରାଜାଙ୍କ ସମ୍ମୁଖରେ ସବୁ କଥା ଜଣାଇଲେ, ତଥାପି ତାଙ୍କର ସବୁ ଚେଷ୍ଟା ବୃଥା ହେଲା । ତହୁଁ ଶକୁନ୍ତଳା ଦୁଷ୍ମନ୍ତ ଦେଇଥିବା ମୁଦିଟି ଖୋଜିଲେ । ହାୟ ! ତାହା ମଧ୍ୟ ସେ ପାଇଲେ ନାହିଁ । ଏଥିରେ ଶକୁନ୍ତଳାଙ୍କ ମୁଣ୍ଡରେ ବଜ୍ର ପଡ଼ିଲା ପରି ଜଣାଗଲା । ସେ କିଛି ଉପାୟ ନ ପାଇ

କାନ୍ଦିବାକୁ ଲାଗିଲେ । ଶିଷ୍ୟ ଦୁଇଜଣ ଓ ଗୌତମୀ ସେ ସ୍ଥାନ ଛାଡ଼ି ଚାଲିଗଲେ । ଶକୁନ୍ତଳା ସେମାନଙ୍କ ପଛେ ପଛେ ଗଲେ ।

ଅଳ୍ପ ବାଟ ଗଲା ପରେ ସ୍ୱର୍ଗର ଅପ୍‌ସରା ମେନକା ହଠାତ୍ ଉପସ୍ଥିତ ହୋଇ ଶକୁନ୍ତଳାକୁ କୋଳରେ ଧରି ମହର୍ଷି କଶ୍ୟପଙ୍କ ଆଶ୍ରମକୁ ନେଇଗଲେ । ମେନକା ଶକୁନ୍ତଳାଙ୍କର ଜନନୀ; କୌଣସି ଅଭିଶାପ ଯୋଗୁ ସେ ମର୍ତ୍ତ୍ୟରେ ଜାତ ହୋଇଥିଲେ ଏବଂ ଶକୁନ୍ତଳାଙ୍କ ଜନ୍ମ ପରେ ସେ ସ୍ୱର୍ଗକୁ ଫେରି ଯାଇଥିଲେ ।

ଶକୁନ୍ତଳା କଶ୍ୟପ ମୁନିଙ୍କ ଆଶ୍ରମରେ ଘୋର ଦୁଃଖରେ ସମୟ କଟାଇବାକୁ ଲାଗିଲେ । ଅଳ୍ପ ଦିନ ପରେ ତାଙ୍କ ଗର୍ଭରୁ ଏକ ପୁତ୍ର ଜାତ ହେଲା । ତାଙ୍କର ନାମ 'ଭରତ' । ଭରତ ଆଶ୍ରମରେ ଥାଇ ମୁନିଙ୍କଠାରୁ ସମସ୍ତ ପ୍ରକାର ବିଦ୍ୟା ଶିକ୍ଷା କଲେ ।

ଦିନେ ରାଜା ଦୁଷ୍ମନ୍ତ ସିଂହାସନରେ ବସିଛନ୍ତି, ଏହି ସମୟରେ ଜଣେ ନଗରପାଳ ମୁଦିଟିଏ ରାଜାଙ୍କୁ ଦେଖାଇ କହିଲା, "ମହାରାଜ ! ଆପଣଙ୍କର ନାମଲେଖାଥିବା ଏ ରତ୍ନ ମୁଦିଟି ଜଣେ କେଉଟ ବଜାରରେ ବିକ୍ରି କରୁଥିଲା । ମୁଁ ତାକୁ ଧରିଆଣିଛି ।" ମୁଦିଟି ଦେଖିଲାକ୍ଷଣି ଦୁଷ୍ମନ୍ତଙ୍କର ପୂର୍ବ କଥା ସବୁ ମନେ ପଡ଼ିଗଲା । ସେ ସଙ୍ଗେ ସଙ୍ଗେ ଶକୁନ୍ତଳାଙ୍କୁ ଖୋଜିବାକୁ ଚାରିଆଡ଼କୁ ଲୋକ ପଠାଇଲେ । କିନ୍ତୁ କୌଣସି

ଠାରୁ କିଛି ସମ୍ବାଦ ମିଳିଲା ନାହିଁ । ଶକୁନ୍ତଳାଙ୍କର ଚିନ୍ତାରେ ରାଜା ବଡ଼ ଅଧୀର ହେଲେ । ଭୋଗ ବିଳାସ ଓ ରାଜକାର୍ଯ୍ୟ ଛାଡ଼ି ସେ ଅତି ଦୁଃଖରେ ସମୟ କଟାଇଲେ ।

କିଛିଦିନ ପରେ ଦୁଷ୍ମନ୍ତ ହିମାଳୟରେ ଉପଦ୍ରବ କରୁଥିବା କେତେ ଦୁଷ୍ଟ ଲୋକଙ୍କୁ ଶାସନ କରିବାକୁ ଗଲେ । ସେମାନଙ୍କୁ ଦମନ କରି ସେ କଶ୍ୟପ ମହର୍ଷିଙ୍କ ଆଶ୍ରମ ବାଟେ ଫେରିଲେ । ସେତେବେଳେ ଭରତ ଗୋଟିଏ ସିଂହଶିଶୁ ଧରି



ଖେଳୁଥିଲେ । ତାଙ୍କର ଦିବ୍ୟ ସୁନ୍ଦର ରୂପ ଦେଖି ରାଜା ଅତ୍ୟନ୍ତ ମୁଗ୍ଧ ହେଲେ । ସେ କୌତୂହଳୀ ହୋଇ ବାଳକଟିକୁ ଧରି କୋଳକୁ ନେଲେ । ଏଥିରେ ଭରତଙ୍କର ଦେହରେ

ଥିବା ରକ୍ଷାକବଚଟି ତଳେ ପଡ଼ିଗଲା । ଦୁଷ୍ମନ୍ତ ଏହାକୁ ଉଠାଇ ନେଇ ଭରତଙ୍କୁ ପିନ୍ଧାଇ ଦେଲେ । ଏ କଥା ଦେଖି ଜଣେ ସନ୍ନ୍ୟାସୀ ବିସ୍ମିତ ହେଲେ । କାରଣ କବଚଟିର ଏପରି ଗୁଣ ଥିଲା ଯେ, ଭରତଙ୍କ ପିତା ମାତାଙ୍କ ବ୍ୟତୀତ ଅନ୍ୟ ଯେ କେହି ତାହା ଛୁଇଁବ କବଚଟି ତତ୍‌କ୍ଷଣାତ୍ ଗୋଟିଏ ସାପ ହୋଇ ତାହାଙ୍କୁ ଦଂଶନ କରିବ । ଦୁଷ୍ମନ୍ତ କବଚ ଛୁଇଁଲେ ମଧ୍ୟ ତାଙ୍କର କିଛି କ୍ଷତ ହେଲା ନାହିଁ । ଏଣୁ ସନ୍ନ୍ୟାସୀ ଦୌଡ଼ିଯାଇ ଶକୁନ୍ତଳାଙ୍କୁ ଏକଥା ଜଣାଇଲେ । ଶକୁନ୍ତଳା ଘଟଣାସ୍ଥଳରେ ଉପସ୍ଥିତ ହେଲାକ୍ଷଣି ନିଜର ସ୍ୱାମୀ ରାଜା ଦୁଷ୍ମନ୍ତଙ୍କୁ ଦେଖି ଅବାକ୍ ହେଲେ । ଦୁଷ୍ମନ୍ତ ମଧ୍ୟ ସଙ୍ଗେ ସଙ୍ଗେ ଶକୁନ୍ତଳାଙ୍କୁ ଚିହ୍ନି ପାରିଲେ ଓ ନିଜର ଅନ୍ୟାୟ କାର୍ଯ୍ୟ ପାଇଁ ଅନୁତାପ କଲେ । ଏହିଭଳି ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କର ଅପୂର୍ବ ମିଳନ ହେଲା ।

ରାଜା ଦୁଷ୍ମନ୍ତ କଶ୍ୟପ ମୁନିଙ୍କର ଅନୁମତି ପାଇ ଶକୁନ୍ତଳା ଓ ଭରତଙ୍କ ସହିତ ନିଜ ରାଜଧାନୀକୁ ଫେରିଗଲେ । ଦୁଷ୍ମନ୍ତଙ୍କ ପରେ ଭରତ ରାଜସିଂହାସନରେ ବସିଲେ । ତାଙ୍କ ରାଜତ୍ୱରେ ପ୍ରଜାମାନେ ଅତି ସୁଖରେ ଥିଲେ । ଏଥିପାଇଁ ତାଙ୍କ ନାମ ଲୋକେ ଆଜି ପର୍ଯ୍ୟନ୍ତ ମନେ ରଖିଛନ୍ତି ଏବଂ ଏହି ଭରତଙ୍କ ନାମ ଅନୁସାରେ ଆମ ଦେଶର ନାମ 'ଭାରତ' ହୋଇଅଛି ।



## ଦଧୀଚିଙ୍କ ତ୍ୟାଗ

ବ୍ରହ୍ମାଙ୍କର ତ୍ୱଷ୍ଟା ନାମକ ଗୋଟିଏ ପୁଅ ଥିଲେ । ସେ ଗୋଟିଏ ଅସୁର କନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କର ଗୋଟିଏ ପୁଅ ହୋଇଥିଲା । ପୁଅଟିର ତିନିଗୋଟି ମୁଣ୍ଡ ଥିବାରୁ ବାପ ମା' ତାର ନାମ ଦେଇଥିଲେ 'ତ୍ରିଶିରା' । ତ୍ରିଶିରା ବହୁତ ପାଠ ପଢ଼ିଥିଲେ ଏବଂ ତପସ୍ୟାଦ୍ୱାରା ସିଦ୍ଧିଲାଭ କରି ମହର୍ଷି ହୋଇ ପାରିଥିଲେ । ସେ ଗୋଟିଏ ମୁଖରେ ବେଦ ପଢ଼ନ୍ତି, ଗୋଟିଏ ମୁଖରେ ରାମ ନାମ ଜପ କରନ୍ତି ଏବଂ ଅନ୍ୟ ମୁଖରେ ମଦ୍ୟପାନ କରନ୍ତି । ଏହିପରି ତାଙ୍କଠାରେ ଉଭୟ ଦେବ ଓ ଅସୁରର ସ୍ୱଭାବ ଥିଲା ।

ଥରେ ତ୍ରିଶିରା ଋଷିମାନଙ୍କର ଯଜ୍ଞଭାଗ ଚୋରିକରି ଅସୁରମାନଙ୍କୁ ଦେଲେ । ତେଣୁ ସେମାନେ ତାଙ୍କୁ ବଡ଼ ଆଦର କଲେ । ତ୍ରିଶିରାଙ୍କର କାର୍ଯ୍ୟ ଦେବତାମାନେ ଜାଣି ପାରିଲେ । କ୍ରମେ ଦେବରାଜ ଇନ୍ଦ୍ରଙ୍କ କାନକୁ ଏ କଥା ଗଲା । ତ୍ରିଶିରାଙ୍କ ପ୍ରତି ଇନ୍ଦ୍ରଙ୍କର କ୍ରୋଧ ଜନ୍ମିଲା । ଦେବତାମାନେ ବହୁ ଅନୁରୋଧ କରିବା ସତ୍ତ୍ୱେ ଇନ୍ଦ୍ରଙ୍କର କ୍ରୋଧ ଶାନ୍ତ ହେଲା ନାହିଁ । ସେ ତରବାରୀ ଆଘାତରେ ତ୍ରିଶିରାଙ୍କୁ ବଧ କଲେ ।

ତ୍ରିଶିରଙ୍କ ମୃତ୍ୟୁ ସମ୍ବାଦ ପାଇ ତାଙ୍କର ପିତା ତ୍ୱଷ୍ଟା ରାଗାନ୍ୱିତ ହେଲେ ଏବଂ ପ୍ରତିଶୋଧ ନେବାକୁ ଗୋଟିଏ ଯଜ୍ଞ ଆରମ୍ଭ କଲେ । ଏ କଥା ଦେବତାମାନେ ଶୁଣି ଭୀତ ହେଲେ । ତ୍ୱଷ୍ଟା ଯଜ୍ଞକଲେ ପୂର୍ଣ୍ଣାହୁତି ଦେବାମାତ୍ରେ ଗୋଟିଏ ଭୀଷଣକାୟ ପୁତ୍ର ଜନ୍ମିଲା । ତାହାର ତେଜ ଓ ବଳ ଦେଖି ତ୍ରିଭୁବନ ଥରି ଉଠିଲା । ଏହି ପୁତ୍ରର ନାମ ହେଲା ବୃତ୍ରାସୁର । ସେ କ୍ରମେ ବଡ଼ ହେଲା ଏବଂ ବହୁ ସୈନ୍ୟ ସଂଗ୍ରହ କରି ସ୍ୱର୍ଗରାଜ୍ୟ ଆକ୍ରମଣ କଲା । ଫଳରେ ଇନ୍ଦ୍ର ତା'ଠାରୁ ପରାଜିତ ହୋଇ ପଳାୟନ କଲେ । ବୃତ୍ରାସୁର ସ୍ୱର୍ଗର ରାଜା ହେଲା । ଏଥିରେ ଦେବତାମାନେ ଭୟପାଇ ବ୍ରହ୍ମାଙ୍କ ନିକଟକୁ ଗଲେ । ବ୍ରହ୍ମା କହିଲେ, "ବୃତ୍ରାସୁରକୁ ମାରିବାକୁ ମୋର ଶକ୍ତି ନାହିଁ । ଚାଲ, ଭଗବାନଙ୍କ ନିକଟକୁ ଯିବା; ସେ ନିଶ୍ଚୟ କୌଣସି ପ୍ରତିକାର କରିବେ ।"

ବ୍ରହ୍ମା ଓ ଦେବତାମାନେ ବୈକୁଣ୍ଠ ପୁରକୁ ଗଲେ ଏବଂ ସମସ୍ତେ ହାତଯୋଡ଼ି ଭଗବାନଙ୍କୁ ପ୍ରାର୍ଥନା କଲେ "ପ୍ରଭୋ ! ବୃତ୍ରାସୁର ବର୍ତ୍ତମାନ ସ୍ୱର୍ଗର ରାଜା । ତାହାର ଅତ୍ୟାଚାର ସହି ନ ପାରି କେତେ ଦେବତା ସ୍ୱର୍ଗ ଛାଡ଼ି ପଳାଇ ଗଲେଣି । ତାହାପ୍ରତି ଉପଯୁକ୍ତ ଶାସ୍ତି ବିଧାନ କରି ଆମମାନଙ୍କୁ ରକ୍ଷା କରନ୍ତୁ ।"

ଦେବତାମାନଙ୍କ ଦୁଃଖରେ ନାରାୟଣଙ୍କର ଦୟା ହେଲା । ସେ କହିଲେ, "ବୃତ୍ରାସୁର ମୋର ଜଣେ ପ୍ରଧାନ ଭକ୍ତ । ମୁଁ ତାକୁ କଦାପି ମାରିବି ନାହିଁ । ତଥାପି ଏକ ଉପାୟ

ଜନ୍ମ ଦେଇଛନ୍ତି, ଶୁଣ । ମର୍ତ୍ତ୍ୟରେ ଦଧୀଚ ନାମରେ ଜଣେ ମହର୍ଷି ଅଛନ୍ତି । ତାଙ୍କ ଅସ୍ଥିରେ ବଜ୍ର ତିଆରି କଲେ ତହିଁରେ ବୃତ୍ରାସୁରର ଶୀଘ୍ର ବିନାଶ ହେବ ।"



ଦେବତାମାନେ ଦଧୀଚଙ୍କ ନିକଟକୁ ଗଲେ । ସେମାନଙ୍କୁ ଦେଖି ମହର୍ଷି ପାଦ୍ୟଅର୍ଘ୍ୟ ଦେଇ ପୂଜାକଲେ ଏବଂ ଆସିବାର କାରଣ ପଚାରିଲେ । ଇନ୍ଦ୍ର କହିଲେ, "ମହର୍ଷେ ! ବୃତ୍ରାସୁର ନିଜ ବାହୁବଳରେ ଇନ୍ଦ୍ରପଦ ମାଡ଼ି ବସିଛି । ସ୍ୱର୍ଗରେ ନାନା ପ୍ରକାର ଅତ୍ୟାଚାର କରୁଅଛି । ପ୍ରତିକାର ପାଇବା ଆଶାରେ ଆମ୍ଭେମାନେ ଭଗବାନଙ୍କ ନିକଟକୁ ଯାଇଥିଲୁ । ସେ କହିଲେ, ଦଧୀଚଙ୍କ ଅସ୍ଥି ନିର୍ମିତ ବଜ୍ର ବ୍ୟତୀତ ବୃତ୍ରାସୁର ଅନ୍ୟ କେଉଁଥିରେ ମରିବ ନାହିଁ ।'

ଏତିକି କହି ଇନ୍ଦ୍ର ନୀରବ ହେଲେ । ଦେବତାମାନେ ତଳକୁ ମୁହଁ ପୋତି କରି ରହିଲେ । ସେମାନଙ୍କ ମନକଥା ଜାଣିପାରି ଦଧୀଚି କହିଲେ, "ଦେବରାଜ ! ମନକଥା ପୂରା ଖୋଲି କହିବାକୁ ଏତେ କୁଣ୍ଠିତ କାହିଁକି ? ଜନ୍ମ ହେଲେ ମୃତ୍ୟୁ ନିଶ୍ଚୟ । ଏଣୁ ଦେବତାମାନଙ୍କର ମଙ୍ଗଳ ପାଇଁ ମୁଁ ବର୍ତ୍ତମାନ ଦେହତ୍ୟାଗ କରିବାକୁ ବି ହେଲେ କୁଣ୍ଠିତ ନୁହେଁ । ମୋର ଅସ୍ଥି ଯୋଗେ ସେମାନଙ୍କର ଉପକାର ହେଲେ ମୋର ଜନ୍ମ ସାର୍ଥକ ହେବ । ଏଣୁ ବର୍ତ୍ତମାନ ମୁଁ ଦେହତ୍ୟାଗ କରୁଛି; ମୃତ୍ୟୁପରେ ମୋର ଅସ୍ଥି ନେଇ ଆପଣଙ୍କ ନିଜକାର୍ଯ୍ୟ ସାଧନ କରନ୍ତୁ ।"

ଦଧୀଚି ଯୋଗାସନରେ ବସି ଦେହତ୍ୟାଗ କଲେ । ଇନ୍ଦ୍ର ତାଙ୍କର ଅସ୍ଥି ନେଇ ବିଶ୍ୱକର୍ମାଙ୍କଦ୍ୱାରା ବଜ୍ର ନିର୍ମାଣ କରାଇଲେ । ଏହି ଅସ୍ତ୍ର ଯୋଗେ ଇନ୍ଦ୍ର ବୃତ୍ରାସୁରକୁ ବଧ କଲେ । ଦେବତାମାନେ ନିଶ୍ଚିନ୍ତ ହେଲେ । ଦଧୀଚିଙ୍କ ତ୍ୟାଗ ଯୋଗୁଁ ସ୍ୱର୍ଗରେ ଶାନ୍ତି ଫେରିଆସିଲା ।



## ଜଡ଼ ଭରତ

ଋଷଭ ବୋଲି ଜଣେ ରାଜା ଥିଲେ । ତାଙ୍କର ପୁତ୍ରର ନାମ ଭରତ । ଏହି ଭରତ ହେଉଛନ୍ତି ଆଦି ଭରତ । ସେ

କିଛିକାଳ ରାଜତ୍ୱ କଲାପରେ ତାଙ୍କର ସଂସାରପ୍ରତି ବୈରାଗ୍ୟ ଆସିଲା । ତେଣୁ ସେ ରାଜଗାଦି ଛାଡ଼ି ବନରେ ପୁଲହ ମୁନିଙ୍କ ଆଶ୍ରମରେ ରହି ତପସ୍ୟା କଲେ ।

କିଛିଦିନ ଚାଲିଗଲା । ଦିନେ ଭରତ ନଦୀରେ ସନ୍ଧ୍ୟା ତର୍ପଣ କରିବା ସମୟରେ ଦେଖିଲେ ଯେ ଏକ ବାଘ ଗୋଟିଏ ହରିଣୀକୁ ଗୋଡ଼ାଉଛି ଓ ସେ ନିଜର ଶାବକ ସହିତ ଦୌଡ଼ି ପଳାଉଛି । ଶେଷରେ ହରିଣୀଟି ଅଧିକ ଦୂର ଦୌଡ଼ି ନ ପାରି ନଦୀରେ ପଡ଼ି ପ୍ରାଣ ହରାଇଲା । ଶାବକଟି ଅତି ବିକଳରେ ମୁନିଙ୍କ ଆଡ଼କୁ ଚାହିଁ କାନ୍ଦିବାକୁ ଲାଗିଲା । ଏଥିରେ ଭରତଙ୍କ ମନରେ ବିଶେଷ ଦୟା ହେଲା । ସେ ଶାବକଟିକୁ କୋଳରେ ଧରି ଆଶ୍ରମକୁ ଫେରି ଆସିଲେ ।

ମୃଗ ଶାବକ ପାଇବାପରେ ଭରତଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ସେ ସର୍ବଦା ତାହାର ଲାଳନ ପାଳନରେ ମନଦେଲେ ଓ ତାକୁ ପୁତ୍ରଠାରୁ ଅଧିକ ସ୍ନେହ କଲେ । ତାଙ୍କର ଜପତପସବୁ କୁଆଡ଼େ ଗଲା । ମୃଗଶାବକ ତାଙ୍କର ଗଣ୍ଠିଧନ ଓ ନୟନ ପିତୁଳା ହେଲା । ସେ କୁଆଡ଼େ ଟିକିଏ ଚାଲିଗଲେ ତାଙ୍କୁ ଚାରିଆଡେ଼ ଅନ୍ଧକାର ଦିଶିଲା । ଶୟନ, ସ୍ୱପ୍ନ ଓ ଜାଗରଣରେ କେବଳ ସେହି ମୃଗଶାବକ ବିନା ତାଙ୍କୁ ଆଉ କିଛି ସୁଖ ଲାଗିଲା ନାହିଁ । ସଂସାର ଛାଡ଼ିଦେଇ ଭରତ ସିଧା ବଣକୁ ଆସିଲେ, କିନ୍ତୁ ବର୍ତ୍ତମାନ ସେ ମହାସଂସାରୀ ହୋଇପଡ଼ିଲେ ।

ସବୁବେଳେ ସବୁ କଥା ସମାନ ନ ଥାଏ । ଦୈବଯୋଗକୁ ଦିନେ ମୃଗଶାବକଟି ଚରିବାକୁ ଯାଇ ଆଉ ଫେରିଲା ନାହିଁ । ଭରତଙ୍କ ମନ କି ଆଉ ଥୟ ହୁଏ ? ସେ ଏକାବେଳକେ ପାଗଳ ହୋଇ ଏଣେ ତେଣେ ଦଉଡ଼ିଲେ । ବୃକ୍ଷଅଡ଼େ ଖୋଜିଲେ ଓ କେତେ କାନ୍ଦିଲେ । ଭରତଙ୍କ ମନରେ ଏକ ଦାରୁଣ ଆଘାତ ଲାଗିଲା । ଶାବକକୁ ହରାଇ ସେ ଅନ୍ତରରେ ପୁତ୍ରଶୋକ ଅନୁଭବ କଲେ । ଶେଷରେ ସେହି ଶାବକକୁ ଝୁରି ଝୁରି ସେ ପ୍ରାଣତ୍ୟାଗ କଲେ ।

'ଏ ମନ ଝୁରୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା ।' ଭରତ ଦଣ୍ଡ ନାମକ ଏକ ପର୍ବତରେ ମୃଗରୂପରେ ଜନ୍ମଗ୍ରହଣ କଲେ । ସେ ଜାତିସ୍ମର ଥିଲେ । ତେଣୁ ପୂର୍ବଜନ୍ମର କର୍ମଫଳ ଯୋଗୁଁ ଏ ଜନ୍ମରେ ପଶୁ ହୋଇଥିବାରୁ ସେ ଅନୁତାପ କଲେ ।

ଭରତ ପୁଲହ ମୁନିଙ୍କ ଆଶ୍ରମକୁ ଯାଇ ବରାବର ବିଚରଣ କରୁଥିଲେ । ଆଶ୍ରମର ଯଜ୍ଞ ଓ ହୋମ ଦେଖିବାକୁ ଏବଂ ଧର୍ମଶାସ୍ତ୍ର ଶୁଣିବାକୁ ସେ ଅତ୍ୟନ୍ତ ଆଗ୍ରହୀ ହେଲେ ।

ଦିନେ ଭରତ ଅତି କାତରକଣ୍ଠରେ ଭଗବାନଙ୍କୁ ଡ଼ାକିଲେ । ଭଗବାନ ସମସ୍ତଙ୍କର; ମନୁଷ୍ୟ ଡ଼ାକକୁ ଯେପରି ଶୁଣନ୍ତି, ପଶୁ ପକ୍ଷୀ, କୀଟପତଙ୍ଗଙ୍କ ଡ଼ାକକୁ ମଧ୍ୟସେହିପରି ଶୁଣନ୍ତି । ଭଗବାନ ହରିଣରୂପୀ ଭରତଙ୍କ ଡ଼ାକ ଶୁଣିଲେ । ତେଣୁ ସେ ପଶୁଜନ୍ମରୁ ଉଦ୍ଧାର ପାଇ ପୁଣି ମନୁଷ୍ୟ ରୂପରେ ଜନ୍ମଲାଭ କଲେ ।

ଭରତ ଇନ୍ଦ୍ରଚନ୍ଦ୍ର ନାମକ ଏକ ବ୍ରାହ୍ମଣ ଘରେ ଜାତ ହେଲେ । ସୁନ୍ଦର ଲକ୍ଷଣ ଦେଖି ପିତାମାତାଙ୍କ ଆନନ୍ଦ କହିଲେ ନ ସରେ । ପୁଅ କ୍ରମେ ଦୁଇତିନି ବର୍ଷର ହୋଇଗଲା । କିନ୍ତୁ ତାହାର ପାଟି ଫିଟିଲା ନାହିଁ । ସେ ଜଡ଼ ହୋଇ ରହିଲେ ଓ ତାଙ୍କୁ ଜଡ଼ ଭରତ କୁହାଗଲା । କିଛି ଦିନ ପରେ ଜଡ଼ ଭରତଙ୍କ ବାପ ମା ମରିଗଲେ । ତାଙ୍କର ଭାଇ ଭାଉଜ ତାଙ୍କୁ ବଡ଼ ହଇରାଣ କଲେ । ସେ ସବୁ ସହିଗଲେ । କୌଣସି କଥାରେ ପ୍ରତିବାଦ କଲେ କାହାକୁ କିଛି କହିଲେ ନାହିଁ ।

ଜଡ଼ ଭରତ ବଡ଼ ବୁଦ୍ଧିମାନ ଓ ଜ୍ଞାନୀ ଥିଲେ । ସେ ଈଶ୍ୱର ଆରାଧନା ଓ ଧ୍ୟାନରେ ସମସ୍ତ ଅତିବାହିତ କରୁଥିଲେ । ସଂସାର ଜଞ୍ଜାଳରୁ ସେ ସର୍ବଦା ଦୂରରେ ରହୁଥିଲେ । ବସୁ ବସୁ ବା ଚାଲୁ ଚାଲୁ କେବେ କେବେ ଈଶ୍ୱର ଚିନ୍ତାରେ ତନ୍ମୟ ହୋଇ ଯାଉଥିଲେ । ଖାଦ୍ୟପେୟ; ପୋଷାକ ପରିଚ୍ଛଦ କେଉଁଥିରେ ତାଙ୍କର ଆଡମ୍ବର ନ ଥିଲା । ସର୍ବଦା ନିର୍ବିକାର ଭାବରେ ଜୀବନ ଯାପନ କଲେ ।

ଦିନକର ଘଟଣା, ବୃଷଲପତି ବୋଲି ଜଣେ ରାଜା ପୁତ୍ରଲାଭ ପାଇଁ ଯଜ୍ଞ କରୁଥିଲେ । ଯଜ୍ଞ ଶେଷରେ କାଳୀଙ୍କ ପାଖରେ ନରବଳି ଦେବାର କଥା, ତେଣୁ ଲୋକ ଖୋଜାଗଲା । ରାଜାଙ୍କର ଅନୁଚରମାନେ ଦେଖିଲେ ଯେ ଜଡ଼ ଭରତ ଗୋଟିଏ ଗଛ ମୂଳରେ ବସିଛନ୍ତି । ବେଶ୍ ହୃଷ୍ଟପୁଷ୍ଟ ଯୁବକଟିଏ, ନରବଳି ପାଇଁ ଉପଯୁକ୍ତ । ସେମାନେ ତାଙ୍କ ଧରିନେଇ

କାଳୀଙ୍କ ପାଖରେ ପହଞ୍ଚିଲେ । କଳର ସମସ୍ତ ଆୟୋଜନ ହେଲା । ଘାତକ ଖଡ୍ଗ ଉତ୍ତୋଳନ କରିବା ମାତ୍ରେ ସ୍ୱୟଂ କାଳୀ ପ୍ରଚଣ୍ଡ ମୂର୍ତ୍ତି ଧାରଣକରି ଖଡ୍‌ଗଦ୍ୱାରା ସମସ୍ତଙ୍କୁ ବିନାଶ କଲେ । ଏ ଘଟଣାରେ ଚାଞ୍ଚଲ୍ୟ ଖେଳିଗଲା । ସେହିଦିନଠାରୁ ଜଡ଼ ଭରତଙ୍କ ମାହାତ୍ମ୍ୟ ସର୍ବତ୍ର ପ୍ରଚାରିତ ହେଲା ।

ଆଉ ଦିନକର ଘଟଣା । ସିନ୍ଧୁ ଦେଶର ରାଜା ରହୁଗଣ ବ୍ରହ୍ମଜ୍ଞାନ ଲାଭ କରିବା ଉଦ୍ଦେଶ୍ୟରେ କପିଳ ମୁନିଙ୍କ ନିକଟକୁ ସବାରିରେ ଯାଉଥିଲେ । ତାଙ୍କ ପାଲିଙ୍କି କାନ୍ଧେଇବା ପାଇଁ ଜଣେ ଲୋକ ଅଭାବ ପଡ଼ିବାରୁ ସେ ଜଡ଼ ଭରତଙ୍କୁ ଧରିନେଲେ । ଜଡ ଭରତ ଭାର କାନ୍ଧେଇବାରେ ଅଭ୍ୟସ୍ତ ନୁହନ୍ତି । ପୁଣି କାଳେ କେଉଁ ପିମ୍ପୁଡ଼ି ପାଦତଳେ ଦଳିହୋଇ ମରିଯିବେ, ଏହି ଆଶଙ୍କାରେ ସେ ତଳକୁ ଚାହିଁ ଧୀରେ ଧୀରେ ପାଦ ପକାଉଥିଲେ । ଏଣୁ ଅନ୍ୟମାନଙ୍କ ସଙ୍ଗରେ ସେ ଠିକ୍ ତାଳ ପକାଇ ଚାଲି ପାରିଲେ ନାହିଁ । ରାଜା ବିରକ୍ତ ହୋଇ କହିଲେ, "ଅରେ ହେ, ଭାରବାହୀ ପଶୁ ! ଦେଖିବାକୁ ତ ସଲଖ ସୁନ୍ଦର ଦେଖୁଛି ଅଥଚ କାମ କଲାବେଳକୁ ଏମିତି କାହିଁକି ?"

ଭରତ ଦିନେ ହେଲେ କାହାରିକୁ ପାଟି ଫିଟାଇ ନାହାନ୍ତି । ସେ ରାଜାଙ୍କର ଏପରି ଭର୍ତ୍ସନା ଶୁଣି ନ ଶୁଣିଲା ପରି ନୀରବ ରହିଲେ ଓ ପୂର୍ବପରି ଧୀରେ ଧୀରେ ପାଦ ପକାଇଲେ । ରାଜା ପୁଣି ବିରକ୍ତ ହୋଇ କହିଲେ, "ରେ ଭାରବାହୀ ପଶୁ ! ରାଜାର ଆଦେଶ ଅମାନ୍ୟ କରୁଛୁ ?

ତୋତେ ପ୍ରାଣଦଣ୍ଡ ଶାସ୍ତି ଦିଆଯିବ ।" ଜଡ଼ ଭରତ ମନେ ମନେ ଭାବିଲେ, "ଏହାର ତ ଏ ପର୍ଯ୍ୟନ୍ତ କ୍ରୋଧ ଯାଇନାହିଁ । ଏ ବ୍ରହ୍ମଜ୍ଞାନ ଲାଭ କରିବ କ'ଣ ? ଏହାକୁ କିଛି ଉପଦେଶ ଦେବା ଦରକାର ।" ଏହା ଭାବିବା ସଙ୍ଗେ ସଙ୍ଗେ ସ୍ୱତଃ ତାଙ୍କ ପାଟିରୁ ବାହାରି ପଡ଼ିଲା, "ଭାରବାହୀ ପଶୁ କିଏ ? ତୁମେ ନା ମୁଁ । ଟିକିଏ ଚିନ୍ତାକରି ଦେଖ, ଏ ସବାରିର ଦାରଛଡ଼ା ମୋ ଉପରେ ଅନ୍ୟ କିଛି ଭାର ନାହିଁ । ଆଉ ତୁମେ ରାଜ୍ୟରେ ରାଜା ଭାବରେ ବହୁ ଭାର ମୁଣ୍ଡାଇଛ, ଅଥଚ ପ୍ରକୃତରେ ପ୍ରଜାମାନଙ୍କୁ ପାଳନ କରୁନାହଁ । ଧନ ସମ୍ପତ୍ତି, ରାଜ୍ୟରକ୍ଷା ଓ ଶତ୍ରୁ ଆକ୍ରମଣରେ ତୁମ୍ଭର ହୃଦୟ ସବୁବେଳେ ଭାରାକ୍ରାନ୍ତ ହୋଇଅଛି । ଅହଙ୍କାରରେ ତୁମ୍ଭର ହୃଦୟ ପରିପୂର୍ଣ୍ଣ । ଏବେ ଭାବି ଦେଖ, କିଏ ବେଶୀ ଭାର ମୁଣ୍ଡାଇଛି ? କିଏ ପ୍ରକୃତରେ ଭାରବାହୀ ପଶୁ । ମୋତେ ପ୍ରାଣ ଦଣ୍ଡର ଭୟ ଦେଖାଇଲ । ମାତ୍ର ଆତ୍ମା ସହିତ ଦେହର ସମ୍ବନ୍ଧ ନାହିଁ । ଏ ମାଟିର ପିଣ୍ଡ ମାଟିରେ ମିଶିଯିବ ବା ବିଲୁଆ କୁକୁର ଖାଇଯିବେ । ଏଥିରେ ଆତ୍ମାର କିଛି ଯାଏ ଆସେ ନାହିଁ; ଆତ୍ମା ଚିର ଅମର ।"

ଏ ସବୁ କଥା ଶୁଣି ରାଜାଙ୍କର ଜ୍ଞାନ ଉଦୟ ହେଲା । ଭରତଙ୍କୁ ଜଣେ ମହାପୁରୁଷ ମନେକରି ସବାରିରୁ ଡେଇଁ ପଡ଼ିଲେ ଓ ତାଙ୍କ ପାଦତଳେ ପଡ଼ି କ୍ଷମା ମାଗିଲେ । ଭରତ ରାଜାଙ୍କୁ ବ୍ରହ୍ମଜ୍ଞାନ ବିଷୟରେ କେତେକ ଶିକ୍ଷା ଦେଇ ଦକ୍ଷିଣ ଦେଶରେ ତୀର୍ଥ ଭ୍ରମଣ କରିବାକୁ ଉପଦେଶ ଦେଲେ । ଭରତ ପୁଣି ପୂର୍ବପରି ଜଡ଼ ହୋଇଗଲେ ।

[illegible]ଙ୍କ ଭଉଜ ଅନୁସୂୟା ଖରାରେ ଧାନ ଶୁ[illegible]ଙ୍କୁ ଜଗାଇଲେ । ଘରଚଟିଆ ପକ୍ଷୀମାନେ ଧାନ ଖାଇଗଲେ । ଜୀବମାନଙ୍କ ପ୍ରତି ଭରତଙ୍କର ଦୟା ଥିଲା । ଏଣୁ ସେ ଘରଚଟିଆଙ୍କୁ ଉଡ଼ାଇଦେଲେ ନାହିଁ । ଅନୁସୂୟା ତାହା ଦେଖି ରାଗିଗଲେ ଓ ତାଙ୍କୁ ଖୁବ୍ ମାଡ଼ ଦେଲେ ।

ଏତିକିରେ ଅନୁସୂୟାଙ୍କର ରାଗ ତୁଟିନାହିଁ । ସେ ଦୁଇଦିନ ଭରତଙ୍କ ଦୁର୍ଗନ୍ଧ ଗମରା ଚାଉଳ ରାନ୍ଧି ଖାଇବାକୁ ଦେଲେ । ଖାଇବା ପୂର୍ବରୁ ଭରତ ଖାଦ୍ୟଦ୍ରବ୍ୟ ଭଗବାନଙ୍କୁ ଅର୍ପଣ କରନ୍ତି । ଫଳରେ ତାହା ଅମୃତ ପରି ସୁସ୍ୱାଦୁ ହୁଏ ଓ ତହିଁରୁ ସୁଗନ୍ଧ ବାହାରେ ।

ଦିନେ ଅନୁସୂୟା ଜାଣିଲେ ଭରତଙ୍କ ଖାଇବା ପତ୍ରରୁ ସୁବାସ ବାହାରୁଛି । ସେ ଅତି ବିସ୍ମିତ ହେଲେ । ପତ୍ରରୁ ଅଇଁଠା ଟିକେ ନେଇ ପାଟିରେ ମାରିଦେଲେ । ସେ ଅନୁଭବ କଲେ ଯେ ଏପରି ସ୍ୱାଦ ତାଙ୍କ ଜୀବନରେ କେବେ ପାଇ ନାହାନ୍ତି । ସେ ମନେ ମନେ ସ୍ଥିର କଲେ ଯେ, ତାଙ୍କ ହାତ ଗୁଣରୁ ଅଖାଦ୍ୟ ଏପରି ଅମୃତ ପରି ସ୍ୱାଦୁ ଲାଗୁଛି ।

ପ୍ରଶଂସା ପାଇବା ଆଶାରେ ଦିନେ ଅନୁସୂୟା ବନ୍ଧୁ ବ୍ରାହ୍ମଣଙ୍କୁ ନିଜ ଘରକୁ ନିମନ୍ତ୍ରଣ କଲେ ଏବଂ ସେମାନଙ୍କୁ ପୂର୍ବପରି ଗମରା ଚାଉଳ ରାନ୍ଧି ଖାଇବାକୁ ଦେଲେ । ବ୍ରାହ୍ମଣମାନେ ଖାଇବା ତ ଦୂରର କଥା, ଉତ୍କଟ ଗନ୍ଧହେତୁ ଖାଦ୍ୟ ପାଖରେ ବସି ପାରିଲେ ନାହିଁ । ସେମାନେ ଚିତ୍କାର କଲେ ।

ନନ୍ଦୀକଟରେ ଭରତ ଜଡ଼ ହୋଇ ବସିଥାନ୍ତି । ପାଟି ଗୋଳ ଶୁଣି ସେ ଦୌଡ଼ି ଆସିଲେ । ତାଙ୍କୁ କୌଣସି କଥା ଆଉ ଅଜଣା ରହିଲା ନାହିଁ । ସେ ହାତଯୋଡ଼ି ବ୍ରାହ୍ମଣମାନଙ୍କୁ କହିଲେ, "ଆପଣମାନେ ଖାଇବାକୁ ଆସିଛନ୍ତି, ଫେରି ଯାଆନ୍ତୁ ନାହିଁ । ଦୟାକରି ଭୋଜନ କରନ୍ତୁ ।" ଏହା କହି ଭରତ ପ୍ରତ୍ୟେକ ଖାଦ୍ୟ ପାତ୍ରରେ ଟିକିଏ ଟିକିଏ ହାତଛୁଇଁ ଦେଲେ । ସାଙ୍ଗେ ସାଙ୍ଗେ ଖାଦ୍ୟରୁ ସୁଗନ୍ଧ ବହିଲା ଓ ବ୍ରାହ୍ମଣମାନେ ଆନନ୍ଦରେ ତାହା ଖାଇ ଅତ୍ୟନ୍ତ ଖୁସି ହେଲେ ।

ଏ ସମ୍ବାଦ ଜଙ୍ଗଲ ବେଗରେ ଗାଁ ସାରା ଖେଳିଗଲା । ଲୋକେ ଭରତଙ୍କୁ ଜଣେ ମହାପୁରୁଷ ବୋଲି ମନେକଲେ । ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ଅସଂଖ୍ୟ ଲୋକ ଭରତଙ୍କୁ ଦର୍ଶନ କରିବାକୁ ଆସିଲେ ।

ଜନ ଗହଳରେ ରହିବାକୁ ଭରତଙ୍କୁ ଆଉ ସୁଖ ଲାଗିଲା ନାହିଁ । ସେ କିଛିଦିନ ପରେ ଘରୁ ବାହାରିଗଲେ ଏବଂ ଭାରତର ନାନା ତୀର୍ଥ ଭ୍ରମଣ କରି ମୁନି ଋଷିମାନଙ୍କ ସଙ୍ଗରେ ଶେଷ ଜୀବନ କଟାଇଥିଲେ ।

ଭରତଙ୍କ ଭଳି ତପସ୍ୱୀ ଓ ଜାତିସ୍ମର ମହାପୁରୁଷ ଜଗତରେ ବିରଳ ।



# ଗୋ ସେବାର ଫଳ

ଏକଦା ଦିଲ୍ଲୀପ ନାମରେ ଅଯୋଧ୍ୟାରେ ଜଣେ ପ୍ରସିଦ୍ଧ ରାଜା ଥିଲେ । ତାଙ୍କ ରାଣୀଙ୍କର ନାମ ସୁଦକ୍ଷିଣା । ବହୁକାଳ ପର୍ଯ୍ୟନ୍ତ ସେମାନଙ୍କର କୌଣସି ସନ୍ତାନ ଲାଭ ହେଲାନାହିଁ । ତେଣୁ ସେମାନେ ବଡ଼ ବ୍ୟାକୁଳ ହୋଇ ପଡ଼ିଲେ । ଶେଷରେ ସେମାନେ କୁଳଗୁରୁ ବଶିଷ୍ଠଙ୍କ ଆଶୀର୍ବାଦ ଲାଭ କରିବା ନିମନ୍ତେ ତାଙ୍କ ଆଶ୍ରମକୁ ଗଲେ ।

ବଶିଷ୍ଠ ହିମାଳୟ ପାଦଦେଶରେ ଆଶ୍ରମ କରିଛନ୍ତି । ରାଜା ଓ ରାଣୀ ସେଠାରେ ପ୍ରବେଶ କରି ଦେଖିଲେ, ଶିଷ୍ୟମାନେ ଫଳମୂଳ ସଂଗ୍ରହ କରୁଅଛନ୍ତି, ମୁନି କନ୍ୟାମାନେ ଗଛରେ ପାଣି ଦେଉଛନ୍ତି, ମୃଗମାନେ ଦଳ ଦଳ ହୋଇ ଆନନ୍ଦରେ ଆଶ୍ରମର ଚାରିଆଡ଼େ ବୁଲୁଅଛନ୍ତି । ସ୍ଥାନଟି ଅତି ପବିତ୍ର ବୋଧ ହେଉଅଛି । ବଶିଷ୍ଠ ପୂଜା କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି ।

ଶିଷ୍ୟମାନେ ରାଜାରାଣୀଙ୍କୁ ଅତି ଆଦରର ସହିତ ଅଭ୍ୟର୍ଥନା କଲେ । କିଛିକ୍ଷଣପରେ ବଶିଷ୍ଠଙ୍କର ପୂଜା ଶେଷ ହେଲା । ରାଜଦମ୍ପତି ଅତି ଭକ୍ତିର ସହିତ ମହର୍ଷିଙ୍କର ଚରଣ ବନ୍ଦନା କଲେ । ବଶିଷ୍ଠ ଏଥିରେ ସନ୍ତୁଷ୍ଟ ହୋଇ

ପଚାରିଲେ, "ମହାରାଜ ! ତୁମ ରାଜ୍ୟର ସମସ୍ତ କୁଶଳ ତ ।" ତହୁଁ ରାଜା କହିଲେ, "ଆପଣଙ୍କ ଆଶୀର୍ବାଦରୁ ମୋର ଓ ରାଜ୍ୟର ସମସ୍ତ ମଙ୍ଗଳ । ପ୍ରଜାମାନେ ଅତି ସୁଖରେ ବାସ କରୁଅଛନ୍ତି । କିନ୍ତୁ ଆମର କୌଣସି ପୁତ୍ରସନ୍ତାନ ନ ଥିବାରୁ ଭବିଷ୍ୟତ ଅନ୍ଧକାର ବୋଧ ହେଉଅଛି । ତେଣୁ ଆପଣଙ୍କ ଆଶୀର୍ବାଦ ନିମନ୍ତେ ଆଶ୍ରମକୁ ଆସିଅଛୁ ।"

ମହର୍ଷି ବଶିଷ୍ଠ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସବୁକଥା ଜାଣିପାରନ୍ତି । ସେ କିଛି ସମୟ ଧ୍ୟାନରେ ବସି କହିଲେ, "ମହାରାଜ ! ଥରେ ତୁମେ କୌଣସି ଯୁଦ୍ଧରୁ ତରତର ହୋଇ ଫେରୁଥିଲ । ସେତେବେଳେ ବାଟରେ କାମଧେନୁ ସୁରଭୀ ଶୋଇଥିଲେ ! ତୁମେ ତାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ଦେଖାଇନାହଁ । ତେଣୁ ସେ ଅଭିଶାପ ଦେଇଅଛନ୍ତି । ସେହି ହେତୁରୁ ତୁମର ପୁତ୍ରସନ୍ତାନ ହେଉନାହିଁ ।"

ଏକଥା ଶୁଣି ରାଜା ଓ ରାଣୀଙ୍କର ଦୁଃଖର ସୀମା ରହିଲା ନାହିଁ । ବଶିଷ୍ଠ ପୁଣି କହିଲେ, "ମହାରାଜ ! ବ୍ୟସ୍ତ ହୁଅନାହିଁ । ସୁରଭୀଙ୍କର କନ୍ୟା ନନ୍ଦିନୀ ମୋର ଆଶ୍ରମରେ ଅଛନ୍ତି । ତୁମେ ଦୁହେଁ ତାଙ୍କର ସେବା କର । ସେ ସନ୍ତୁଷ୍ଟ ହେଲେ ତୁମର ମନକାମନା ପୂର୍ଣ୍ଣ ହେବ ।"

ଅନନ୍ତର ରାଜା ଓ ରାଣୀ ଭକ୍ତିପୂର୍ଣ୍ଣ ହୃଦୟରେ ନନ୍ଦିନୀଙ୍କର ସେବା କରିବାରେ ଲାଗିଲେ । ପ୍ରତିଦିନ ସକାଳେ ନନ୍ଦିନୀ ବନ ମଧ୍ୟକୁ ଚରିବାକୁ ଗଲେ ରାଜା ଧନୁଃଶର ଧରି

ତାଙ୍କ ପଛେ ପଛେ ଯାଆନ୍ତି । ସୁଦକ୍ଷିଣା କିଛିଦୂର ଯାଇ ତାଙ୍କୁ ବଳେଇ ଦେଇ ଆସନ୍ତି । ବନ ମଧ୍ୟରେ କାୟା ସଙ୍ଗେ ଛାୟା-ପରି ରାଜା ସର୍ବଦା ନନ୍ଦିନୀଙ୍କର ପାଖେ ପାଖେ ଥାଆନ୍ତି । ସେ ଜଳପାନ କଲେ ରାଜା ଜଳପାନ କରନ୍ତି; ସେ ବିଶ୍ରାମ କଲେ ରାଜା ବିଶ୍ରାମ କରନ୍ତି । ନନ୍ଦିନୀ ଠିଆ ହୋଇ ରହିଲେ ରାଜା ତାଙ୍କୁ ଧୀରେ ଧୀରେ ଆଉଁଷି ଦିଅନ୍ତି । ସନ୍ଧ୍ୟା ହେଲେ ନନ୍ଦିନୀ ଆଶ୍ରମକୁ ଫେରନ୍ତି । ରାଣୀ ତାଙ୍କୁ କିଛି ବାଟରୁ ପାଛୋଟି ନେଇ ବନ୍ଦାପନା କରନ୍ତି । ପୁଣି ନନ୍ଦିନୀ ରାତ୍ରରେ ନିଦ୍ରା ଯିବାଯାଏ ରାଜାରାଣୀ ତାଙ୍କ ସେବାରେ ଲାଗିଥାନ୍ତି ।

ଏହିପରି ସେମାନେ ଏକୋଇଶ ଦିନ ନନ୍ଦିନୀର ସେବା କଲେ । ପରଦିନ ସକାଳେ ନନ୍ଦିନୀ ପୂର୍ବପରି ଅରଣ୍ୟମଧ୍ୟକୁ ଗଲେ । ରାଜା ମଧ୍ୟ ତାଙ୍କ ସଙ୍ଗରେ ଥାନ୍ତି । ନନ୍ଦିନୀ ଚରୁ ଚରୁ ହିମାଳୟର ଏକ ଗହ୍ୱରମଧ୍ୟରେ ପ୍ରବେଶ କଲେ । ରାଜା ଏଥିରେ କୌଣସି ବିପଦର ଆଶଙ୍କା କଲେ ନାହିଁ । କାରଣ ସେ ଜାଣିଥିଲେ ଯେ, ନନ୍ଦିନୀ ସାମାନ୍ୟ ଧେନୁ ନୁହନ୍ତି, କୌଣସି ହିଂସ୍ର ଜନ୍ତୁ ତାଙ୍କୁ ଆକ୍ରମଣ କରିବା ଆଦୌ ସମ୍ଭବ ନୁହେଁ । ଏହା ଭାବି ସେ ହିମାଳୟର ଅପୂର୍ବ ଶୋଭା ଦେଖିବାରେ ଲାଗିଲେ । ଏହି ସମୟରେ ହଠାତ୍ ନନ୍ଦିନୀଙ୍କର ଆର୍ତ୍ତନାଦ ଶୁଣାଗଲା, "ରାଜା ! ମୋତେ ରକ୍ଷାକର ।"

ଦିଲୀପ ଆଖି ଫେରାଇ ଦେଖିଲେ ଯେ, ଏକ ଭୀଷଣ ସିଂହ ନନ୍ଦିନୀଙ୍କୁ ମାଡ଼ି ବସି ଖାଇବାକୁ ଉଦ୍ୟତ ହେଉଅଛି ।

ସେ ଢଙ୍ଗେ ସଙ୍ଗେ ତୂଣୀରରୁ ଶର ବାହାର କରି ସିଂହକୁ ମାରିବାକୁ ଇଚ୍ଛାକଲେ । କିନ୍ତୁ ଅତି ଆଶ୍ଚର୍ଯ୍ୟର କଥା ଯେ, ତାଙ୍କର ଦକ୍ଷିଣ ହସ୍ତ ତୂଣୀରମଧ୍ୟରେ ଲାଗି ରହିଲା । ରାଜା ଯେତେ ଚେଷ୍ଟା କଲେ ମଧ୍ୟ ନିଜର ହସ୍ତକୁ ତୂଣୀରରୁ ବାହାର କରି ପାରିଲେ ନାହିଁ । ଏହା ଦେଖି ରାଜାଙ୍କର ମନ ଦୁଃଖ ଓ ବିସ୍ମୟରେ ପୂରିଗଲା ।

ଏହି ସମୟରେ ସିଂହ ଥଟ୍ଟା କରି ରାଜାଙ୍କୁ କହିଲା, "ରାଜା ! ବିଶାଳ ରାଜ୍ୟର ଅଧିପତି ହୋଇ ଆଜି ସାମାନ୍ୟ ଗାଈର ଜୀବନ ରକ୍ଷାକରି ପାରୁନାହିଁ । ଏହାଠାରୁ ବଳି ଅଧିକ ଲଜ୍ଜାର କଥା ଆଉ କ'ଣ ହୋଇପାରେ ?"



ରାଜା—ପଶୁରାଜ ! ପ୍ରକୃତରେ ମୋର ସମସ୍ତ ଶକ୍ତି ତୁମ୍ଭଠାରେ ପରାସ୍ତ ।

ସିଂହ—ତୁମ୍ଭେ ମୋତେ ସାମାନ୍ୟ ସିଂହ ବୋଲି ମନେ କରିଅଛ, କିନ୍ତୁ ତା ନୁହେଁ । ମହାଦେବ ମୋତେ ଏ ବନ ପ୍ରଦେଶ ରକ୍ଷା କରିବା ନିମନ୍ତେ ନିଯୁକ୍ତ କରିଛନ୍ତି । ମୋ ନିକଟରେ ଯେଉଁ ପ୍ରାଣୀ ଉପସ୍ଥିତ ହେବ, ମୁଁ ତାକୁ ଭକ୍ଷଣ

କରି ମୋର କ୍ଷୁଧା ଦୂର କରିବ । ଜନ୍ମ ଦିନରୁ ମୁଁ କୌଣସି ଖାଦ୍ୟ ଖାଇନାହିଁ । ଭାଗ୍ୟ କ୍ରମେ ଆଜି ଏ ଗାଈଟିକୁ ପାଇଛି । ତେଣୁ ଯେତେ ଚେଷ୍ଟା କଲେ ମଧ୍ୟ ଆପଣ ଗାଈଟିକୁ ରକ୍ଷା-କରି ପାରିବେ ନାହିଁ । ଏହା ନିଶ୍ଚିତ କଥା ।

ରାଜା—ପଶୁରାଜ ! ଏ ଗାଈଟି ମୋର ନୁହେଁ । ଏହା ମୋର ଗୁରୁ ମହର୍ଷି ବଶିଷ୍ଠଙ୍କର । ସେ ଏହାଯୋଗେ ପ୍ରତ୍ୟହ ଯଜ୍ଞ କାର୍ଯ୍ୟ କରନ୍ତି । ଗାଈଟିକୁ ଫେରି ନ ପାଇଲେ ସେ ମୋତେ ଅଭିଶାପ ଦେବେ । ପୁଣି ଗାଈଟିର ବାଛୁରୀ ମାକୁ ନ ଦେଖିଲେ ବଡ଼ ବ୍ୟାକୁଳ ହେବ । ଏଣୁ ଅନୁରୋଧ, ଗାଈ ପରିବର୍ତ୍ତେ ମୋତେ ଭକ୍ଷଣ କରି ତୁମ୍ଭର କ୍ଷୁଧା ଶାନ୍ତ କର ।

ସିଂହ—ରାଜା ! ବିଶାଳ ଭୂଖଣ୍ଡର ପାଳକ ଆପଣ, ସାମାନ୍ୟ ଗାଈଟା ଲାଗି ନିଜର ଜୀବନ ତ୍ୟାଗ କରିବା ଠିକ୍ ନୁହେଁ । ମହର୍ଷି କୋପକଲେ ଆପଣ ଏ ଗାଈଟି ବଦଳରେ ତାଙ୍କୁ ଶହ ଶହ ଗାଈ ଦେଇ ପାରନ୍ତି । ଏଥିରେ ତାଙ୍କର ଯଜ୍ଞ କାର୍ଯ୍ୟରେ ଅଧିକ ସୁବିଧା ହେବ ।

ଏହି ସମୟରେ ନନ୍ଦିନୀ ଅଧିକ କାତର ନୟନରେ ରାଜାଙ୍କ ଆଡ଼କୁ ଚାହିଁ ରହିଲେ । ଏହା ଦେଖି ଦିଲୀପ ଆଉ ଥୟ ହୋଇ ରହି ପାରିଲେ ନାହିଁ । ତାଙ୍କ ଦୁଇ ଆଖିରୁ ଲୋତକ ବହିବାକୁ ଲାଗିଲା । ସେ ପୁଣି ସିଂହକୁ କହିଲେ, "ବିପଦରୁ ପ୍ରାଣୀମାନଙ୍କୁ ଉଦ୍ଧାର କରିବା କ୍ଷତ୍ରିୟର ଧର୍ମ । ମୁଁ ଯେବେ ନନ୍ଦିନୀଙ୍କ ଜୀବନ ରକ୍ଷା କରି ନ ପାରେ, ତେବେ ମୋର ବଞ୍ଚି ରହିବାର କି ପ୍ରୟୋଜନ ? ପୁଣି ନନ୍ଦିନୀ

କାମଧେନୁ ସୁରଭୀଙ୍କର କନ୍ୟା । ତାଙ୍କ ବଦଳରେ ଲକ୍ଷ ଲକ୍ଷ ଗାଈ ଦେଲେ ମଧ୍ୟ ମହର୍ଷିଙ୍କର କ୍ରୋଧ ଶାନ୍ତ ହେବ ନାହିଁ । ଏଣୁ ମୋତେ ଭକ୍ଷଣ କରି ନନ୍ଦିନୀଙ୍କୁ ଛାଡ଼ିଦିଅ । ସେ ଆଶ୍ରମକୁ ଫେରି ଯାଆନ୍ତୁ ।"

ଶେଷରେ ସିଂହ ରାଜାଙ୍କର ଅନୁରୋଧ ରକ୍ଷା କରିବାକୁ ରାଜିହେଲା, ସଙ୍ଗେ ସଙ୍ଗେ ତାଙ୍କର ହାତ ତୂଣୀର ମଧ୍ୟରୁ ବାହାରି ଆସିଲା । ରାଜା ଧନୁଶର ତଳେ ପକାଇ ଦେଇ ନିଜର ମୁଣ୍ଡ ନୁଆଁଇ ସିଂହ ଆଗରେ ମୃତ୍ୟୁକୁ ଅପେକ୍ଷା କରି ରହିଲେ ।

ହଠାତ୍ ରାଜାଙ୍କ ଉପରେ ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ସେ ମୁଣ୍ଡ ଟେକି ଦେଖିଲେ ଯେ ସମ୍ମୁଖରେ କେବଳ ନନ୍ଦିନୀ ଠିଆ ହୋଇଛନ୍ତି, ସିଂହ ନାହିଁ । ନନ୍ଦିନୀ କହିଲେ, "ବତ୍ସ ! ଉଠ, ଜଗତରେ କୌଣସି ସିଂହ ମୋତେ ଆକ୍ରମଣ କରିନାହିଁ । କେବଳ ତୁମର ଭକ୍ତି ପରୀକ୍ଷା କରିବା ନିମନ୍ତେ ମୁଁ ଏଭଳି ମାୟା କରିଥିଲି । ମୁଁ ତୁମ ସେବାରେ ସନ୍ତୁଷ୍ଟ ହୋଇଛି; କି ବର ମାଗୁଛ ମାଗ । ମୁଁ ତାହା ଆନନ୍ଦରେ ପ୍ରଦାନ କରିବି ।"

ରାଜା କରଯୋଡ଼ି ଜଣାଇଲେ, "ମା ! ମୋର ଗୋଟିଏ ପୁତ୍ର ହେଉ, ଏହାହିଁ ଏକମାତ୍ର କାମନା ।" 'ତଥାସ୍ତୁ' କହି ନନ୍ଦିନୀ ଆଶ୍ରମକୁ ଫେରିଲେ । ରାଜା ତାଙ୍କ ପଛେ ପଛେ ଗଲେ ଓ ବଶିଷ୍ଠଙ୍କୁ ସମସ୍ତ ଘଟଣା ଜଣାଇଲେ । ବଶିଷ୍ଠ କହିଲେ, "ମହାରାଜ ! ଏବେ ତୁମର ଅଭିଳାଷ ସିଦ୍ଧ

ହେଲ୍ । ଆଉ ଆଶ୍ରମରେ ନ ରହି ନିଜ ରାଜ୍ୟକୁ ଫେରିଯାଅ ଓ ସୁଖରେ ପ୍ରଜାପାଳନ କର ।"

ରାଜା ଓ ରାଣୀ ମହର୍ଷି ଓ ନନ୍ଦିନୀଙ୍କର ଚରଣ ବନ୍ଦନା କରି ଅଯୋଧ୍ୟାକୁ ଫେରିଗଲେ । କେତେ ଦିନପରେ ସୁଦକ୍ଷିଣାଙ୍କ ଗର୍ଭରୁ ଏକ ବୀରପୁତ୍ର ଜନ୍ମିଥିଲେ । ତାଙ୍କର ନାମ ରଘୁ । ରାମଚନ୍ଦ୍ର ଏହାଙ୍କର ଅଣନାତି ଅଟନ୍ତି ।

